


ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଧାମରାଠାରେ ଧାମରା–ଚାନ୍ଦବାଲି ବନ୍ଦରର ଭିତ୍ତିପ୍ରସ୍ତର
ସ୍ଥାପନ କରୁଛନ୍ତି । (୧୪–୭–୧୯୯୮)



ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଚିଲିକା ମୁହାଣ ଖନନ କାର୍ଯ୍ୟ
ପର୍ଯ୍ୟବେକ୍ଷଣ କରୁଛନ୍ତି । (୧୯–୭–୧୯୯୮)



ନୂଆଦିଲ୍ଲୀଠାରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (୨୭–୮–୧୯୯୮)।



ଖୋର୍ଦ୍ଧାଠାରେ ଆୟୋଜିତ ଏକ ଜନସମାବେଶରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭାଷଣ ଦେଉଛନ୍ତି (୨୯–୮–୧୯୯୮)।

# ଉତ୍କଳ ପ୍ରସଙ୍ଗ

୫୫ ଭାଗ ୨ୟ/୩ୟ ସଂଖ୍ୟା ଭାଦ୍ର-କାର୍ତ୍ତିକ ୧୯୨୦ ଶକାବ୍ଦ ସେପ୍ଟେମ୍ବର-ଅକ୍ଟୋବର ୧୯୯୮



ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ
ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ ରେ ମୁଦ୍ରିତ
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

# ସୂଚୀ

ଶ୍ରଦ୍ଧାଞ୍ଜଳି



ଜାତିର ପିତା

୦୨-୧୦-୧୮୬୯ -- ୩୦-୦୧-୧୯୪୮

## ଶ୍ରଦ୍ଧାଞ୍ଜଳି



ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ

୦୯-୧୦-୧୮୭୭—୧୭-୦୬-୧୯୨୮

## ଶ୍ରଦ୍ଧାଞ୍ଜଳି



ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍
ସେପ୍ଟେମ୍ବର ୫, ୧୮୮୮—ଅପ୍ରେଲ ୧୯୭୫



ଶହୀଦ ବାଜି ରାଉତ
ମୃତ୍ୟୁ-୧୧-୧୦-୧୯୩୮



ଲାଲ୍‌ବାହାଦୁର ଶାସ୍ତ୍ରୀ
୦୨-୧୦-୧୯୦୪—୧୧-୦୧-୧୯୬୬

# ଓଡ଼ିଆ ଜାତିର ସ୍ୱାଭିମାନ ମଧୁସୂଦନ

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଉତ୍କଳ ଗୌରବ ମଧୁସୂଦନଙ୍କର ୧୫୦ତମ ଜୟନ୍ତୀ ବର୍ଷଟିକୁ ଖୁବ୍ ଭଲଭାବରେ ଓଡ଼ିଶାରେ ଯେପରି ପାଳନ କରାଯାଏ ସେଥିପାଇଁ ଗୋଟିଏ କମିଟି ଗଠନ କରିବା ପାଇଁ ମୁଁ ନିଷ୍ପତ୍ତି କରିଛି । ତିନି ବର୍ଷ ତଳେ ବଙ୍କିମଚନ୍ଦ୍ରଙ୍କର ୧୫୦ତମ ଜୟନ୍ତୀ ପାଳନ କରାଯାଇଥିଲା । ବଙ୍ଗଳାର ସେ ପ୍ରଥମ ଗ୍ରାଜୁଏଟ୍ । ସେ ଯେଉଁ ସବୁ ଉପନ୍ୟାସ, ପ୍ରବନ୍ଧ ରଚନା କରିଯାଇଛନ୍ତି ତାହା ଚିରଦିନ ବଙ୍ଗଳା ଭାଷାକୁ ଉଜ୍ଜ୍ୱଳିମନ୍ତ କରି ରଖିବ । ତାଙ୍କର ପ୍ରସିଦ୍ଧ କବିତା "ବନ୍ଦେ ମାତରଂ" ପାଇଁ ସେ ଚିରଦିନ ଲୋକଙ୍କର ହୃଦୟରେ ବଞ୍ଚି ରହିବେ । ତାଙ୍କର ଅମ୍ଳାନ ପ୍ରତିଭା ବଞ୍ଚି ରହିବ ତାଙ୍କର ଉପନ୍ୟାସମାନଙ୍କ ଜରିଆରେ । ତାଙ୍କର ସମ୍ପୂର୍ଣ୍ଣ ଉପନ୍ୟାସମାଳା ଓଡ଼ିଆରେ ଏପର୍ଯ୍ୟନ୍ତ ପ୍ରକାଶ ପାଇନି । ସେ ଦିଗରେ ଉଦ୍ୟମ କରାଯାଉଛି । ଆଜି ଆମେ ମଧୁବାବୁଙ୍କର ୧୫୦ତମ ଜୟନ୍ତୀ ପାଳନ କରୁଛେ । କେଉଁଥି ପାଇଁ ତାଙ୍କୁ ଓଡ଼ିଆ ଜାତି ପୂଜା କରୁଛି ତାଙ୍କୁ ସମସ୍ତେ ଜାଣିବା ଦରକାର । ବିଶେଷ ଭାବରେ ଯେଉଁ ନୂଆ ପିଢ଼ୀ, ଛାତ୍ର, ଯୁବକ ସେମାନେ ଭଲ ଭାବରେ ତାଙ୍କୁ ହୃଦୟଙ୍ଗମ କରିବା ଆବଶ୍ୟକ । ମଧୁବାବୁ ଥିଲେ ଓଡ଼ିଶାର ପ୍ରଥମ ମାଟ୍ରିକ୍ୟୁଲେଟ୍, ପ୍ରଥମ ଗ୍ରାଜୁଏଟ୍, ପ୍ରଥମ ଓକିଲ, ପ୍ରଥମ ମନ୍ତ୍ରୀ । ସେ ବିହାର–ଓଡ଼ିଶା ଛାତ୍ର ସମ୍ମିଳନୀକୁ ଗୋଟିଏ ବାର୍ତ୍ତା ଦେଇଥିଲେ । ସେଥିରେ ସେ କହିଥିଲେ ଯେ ଓଡ଼ିଆ ଜାତିର ପ୍ରଥମ ଗ୍ରାଜୁଏଟ୍ ଯଦି ଏତେ କାମ କରିଗଲା ମୋ ପରେ ବହୁତ ଗ୍ରାଜୁଏଟ୍ ଆସିବେ, ସେମାନେ ନିଶ୍ଚିତ ଭାବରେ ଓଡ଼ିଆ ଜାତିକୁ ଆହୁରି ଉଠେଇବା ପାଇଁ ଚେଷ୍ଟା କରିବେ । ଆଜି ସମସ୍ତଙ୍କୁ ମୋର ନିବେଦନ ମଧୁବାବୁଙ୍କର ଯୋଗ୍ୟ ଦାୟାଦ ହେବା ପାଇଁ ଆମେମାନେ ସମସ୍ତେ ସଂକଳ୍ପ କରିବା ।



ହୀନମନ୍ୟତା ମଧୁବାବୁଙ୍କର ଜୀବନରେ କେବେହେଲେ ନଥିଲା । ସେ ଅତ୍ୟନ୍ତ ବୁଦ୍ଧିମାନ ଲୋକ ଥିଲେ । ଭାରତବର୍ଷର ଯେକୌଣସି ବୁଦ୍ଧିଜୀବୀଙ୍କ ସହିତ ସେ ତୁଳନୀୟ ଥିଲେ । ଜ୍ଞାନ, ବୁଦ୍ଧି ସବୁଥିରେ । ଇଂରେଜୀ ଭାଷାରେ ତାଙ୍କର ଅପରିସୀମ ଦକ୍ଷତା ଥିଲା । ବଙ୍ଗଳାର ଜଣେ ଅତି ପ୍ରସିଦ୍ଧ ବ୍ୟକ୍ତି, କଂଗ୍ରେସକୁ ଯିଏ ଆଣିଥିଲେ ବଙ୍ଗ ଦେଶକୁ, ସେହି ସାର୍ ସୁରେନ୍ଦ୍ରନାଥ ବାନାର୍ଜୀ ଏବଂ ମଧୁସୂଦନ ଦାସ ଗୋଟିଏ ମଞ୍ଚରେ କଟକରେ ଭାଷଣ ଦେଇଥିଲେ । ହରେକୃଷ୍ଣ ମହତାବ ଜଣେ ଶ୍ରୋତା ଥିଲେ ସେତେବେଳେ । ସେ ମୋତେ କହିଛନ୍ତି ଯେ ମଧୁବାବୁଙ୍କର ଭାଷଣ ସୁରେନ୍ଦ୍ରନାଥ ବାନାର୍ଜୀଙ୍କଠାରୁ ଉତ୍କୃଷ୍ଟତର ଥିଲା । ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ କୁହାଯାଉଥିଲା "ଦି ଗୋଲ୍ଡେନ୍ ଟଙ୍ଗ୍ ଅଫ୍ ବେଙ୍ଗଲ" । କିନ୍ତୁ ମଧୁବାବୁ ଏତେ ଚମତ୍କାର ଭାଷଣ ଦେଉଥିଲେ ଯେ ସମସ୍ତେ ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ । ସେ ଓଡ଼ିଶାରେ ଜନ୍ମ ନ ହୋଇ ଯଦି ଆଉ କେଉଁଠି ଜନ୍ମ ହୋଇଥାନ୍ତେ ତା'ହେଲେ ସେ ଭାରତବର୍ଷର ନେତା ହୋଇଥାନ୍ତେ । ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଭାବରେ ବୋଧେ ସେତେବେଳେ ତାଙ୍କୁ ବରଣ କରାଯାଇଥାନ୍ତା ।

ସେ ଥିଲେ ଜଣେ ଶ୍ରେଷ୍ଠ ଆଇନଜ୍ଞ । ଅନେକ ମକଦ୍ଦମାରେ ସେ ବିଜୟୀ ହୋଇଛନ୍ତି । ସୂର୍ଯ୍ୟମଣି ପାଟ ମହାଦେଇ ପୋଷ୍ୟପୁତ୍ର ଗ୍ରହଣ ସମ୍ପର୍କରେ ଏକ ପ୍ରସିଦ୍ଧ ମକଦ୍ଦମା ହୋଇଥିଲା । ସେହି ମକଦ୍ଦମାରେ ସେ ବିଜୟୀ ହେଲେ । ପରବର୍ତ୍ତୀ କାଳରେ ରାଜା ଦିବ୍ୟସିଂହ ଦେବଙ୍କ ମକଦ୍ଦମା ସାରା ଭାରତବର୍ଷରେ ତାଙ୍କୁ ପ୍ରସିଦ୍ଧ କରିଥିଲା । ଓଡ଼ିଆ ଜାତିର ଅଭିମାନ ପୁରୀ ରାଜା । ସେହି ପୁରୀ ରାଜାଙ୍କର ସମ୍ମାନ ସେ ରକ୍ଷା କରିଥିଲେ । ତାଙ୍କୁ ସେତେବେଳେ ଯଷ୍ଟ ଗଲା କ'ଣ ସେ ଫିସ୍ ନେବେ, ସେ କହିଲେ ଯେ ତୁମେ ଗୋଟିଏ ଦଲିଲରେ ମୋତେ ଆଣି ଲେଖିଦିଅ ଯେ ତୁମର ଏହି ଏହି ସମ୍ପତ୍ତି ମୋତେ ଦାନ

କରିବ । ଦଲିଲରେ ସେଇଆ ଲେଖା ହେଲା । ମଧୁବାବୁ ତାଙ୍କ ଉଇଲ୍‌ରେ ଲେଖୁଛନ୍ତି, ମୁଁ ଏ ସମ୍ପତ୍ତିକୁ ଗ୍ରହଣ କରିନାହିଁ କି ଗ୍ରହଣ କରିବି ନାହିଁ । କାରଣ ତାହା ପୁରୀରାଜାଙ୍କର ସମ୍ପତ୍ତି । ଯଦି ସେ ସମ୍ପତ୍ତିକୁ ବିକ୍ରୀ କରି ଦେଇଥାନ୍ତେ, ରାଜା ନିଃସ୍ୱ ହୋଇ ଯାଇଥାନ୍ତେ । ତେଣୁ ଏ ସମ୍ପତ୍ତିକୁ ମୁଁ ରଖି ଦେଇକରି ଗଲି । ସେ ସାଧାରଣ ମହକିଲ ଓ ଗରିବ ଲୋକମାନଙ୍କୁ ବହୁତ ସାହାଯ୍ୟ କରୁଥିଲେ ।

ଥରେ ଗୋଟିଏ ଗରିବ ଲୋକ ପିଟିସନ୍ ଦେବା ପାଇଁ ମୁନ୍‌ସଫ୍ କୋର୍ଟରେ ପହଞ୍ଚିଲା । ମୁନ୍‌ସଫ୍‌ଙ୍କୁ କହିଲା । ଓକିଲ ଲଢ଼ିବାକୁ ମୋର ପଇସା ନାହିଁ । ମୁନ୍‌ସଫ୍ କହିଲେ–ବରଗଛ ତଳିଆ ଓକିଲ ଅନେକ ବସିଛନ୍ତି । ତାଙ୍କ ପାଖକୁ ଯା, କିଛି ଅସୁବିଧା ହେବନି । ସେ ଯାଇ ମଧୁବାବୁଙ୍କୁ ଦେଖିଲା, କହିଲା ଆଜ୍ଞା ! ମୋତେ ମୁନ୍‌ସଫ୍ କହିଲେ ବରଗଛ ତଳିଆ ଓକିଲ ସବୁ ଅଛନ୍ତି, ତାଙ୍କ ପାଖକୁ ଯାଉନୁ । କମ୍ ପଇସାରେ ତୋର କାମ ହୋଇଯିବ; କିଛି ଅସୁବିଧା ହେବନି । ମଧୁବାବୁ କହିଲେ, ତୁ ଯା ସେ ମୁନ୍‌ସଫ୍ କୋର୍ଟରେ ତାଙ୍କୁ ଯାଇ କହିଦେବୁ ଯେ; ବରଗଛ ତଳିଆ ଯେଉଁ ଓକିଲମାନେ ଥିଲେ ସେମାନେ ସମସ୍ତେ ମୁନ୍‌ସଫ୍ ହୋଇ ଗଲେଣି । ଆଉ ଜଣେ କେହି ନାହିଁ ସେଠି । ଏପରି ଭାବରେ ଅତି ବିଚକ୍ଷଣ ବୁଦ୍ଧିମାନ ବ୍ୟକ୍ତି ସେ ଥିଲେ । ସେତେବେଳେ କଲେଜ ପିଲାମାନେ ତାଙ୍କ ଘରକୁ ଯାଉଥିଲେ । ମଧୁବାବୁଙ୍କ ଘର ଥିଲା ଗୋଟିଏ ତୀର୍ଥ ସ୍ଥାନ । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ ସେତେବେଳେ ସମସ୍ତେ ତାଙ୍କ ଘରକୁ ଯାଉଥିଲେ । ସମସ୍ତଙ୍କୁ ସେ ଭାଷଣ ଦେଉଥିଲେ । ଉପଦେଶ ଦେଉଥିଲେ । ଅନେକ ବିଷୟରେ ସେମାନଙ୍କୁ ଶିକ୍ଷା ଦେଉଥିଲେ । ରାଜା ମହାରାଜା ସମସ୍ତେ ତାଙ୍କର ମହକିଲ ଥିଲେ । । କାହାକୁ ସେ ଖାତିର କରୁନଥିଲେ । କେଉଁଝର ରାଜାଙ୍କର ରାଜ୍ୟ ଖସିଯାଉଥିଲା । ତାଙ୍କ ରାଜ୍ୟ ସେ ଫେରାଇ ଆଣିଥିଲେ । ରାଜା ତାଙ୍କୁ ସମୟ ମାଗିଥିଲେ ସାଢ଼େ ୭ଟା ବେଳେ ସେ ତାଙ୍କ ଘରକୁ ଯାଇ ସାକ୍ଷାତ କରିବେ । ରାଜା ଆସି ପହଞ୍ଚିଲେ ସାଢ଼େ ୮ଟା ବେଳେ । ରାଜାଙ୍କୁ ମଧୁବାବୁ କହିଲେ– ଏ ଘଡ଼ିଟିକୁ ଦେଖୁଛନ୍ତି କାନ୍ଥରେ ଝୁଲୁଛି । ଆପଣ ମହାରାଜା; ଭାବିଥିବେ ଯେ ଘଣ୍ଟା ଆପଣଙ୍କୁ ଅପେକ୍ଷା କରି ରହିଥିବ ! କିନ୍ତୁ ଗୋଟିଏ ନିର୍ଜୀବ ବସ୍ତୁ ମଧ୍ୟ ଆପଣଙ୍କୁ ଅପେକ୍ଷା କଲାନାହିଁ । ସାଢ଼େ ୭ଟା ବେଳେ ଆସି ପହଞ୍ଚିବା କଥା, ଆପଣ ସାଢ଼େ ୮ଟା ବେଳେ ପହଞ୍ଚିଲେ । ଆପଣ ଭାବିଛନ୍ତି ମଧୁସୂଦନ ଦାସ ଆପଣଙ୍କୁ ଅପେକ୍ଷା କରି ବସିଥିବେ । ସବୁଠାରୁ ତାଙ୍କର ବଡ଼ ସ୍ୱପ୍ନ ଥିଲା, ଓଡ଼ିଆ ଜାତିକୁ କିପରି ଭାବରେ ଉଠାଇବେ । ୧୮୮୧ ମସିହାରେ ସେ ଯେତେବେଳେ ଓଡ଼ିଶା ଆସିଲେ ସେତେବେଳର ଅବସ୍ଥା ଅନୁମାନ କରିବା କଥା । ସେତେବେଳେ ଆନ୍ଦୋଳନ ହେଲା, ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ । ଏକ 'ସ୍ୱତନ୍ତ୍ର ଭାଷା ନଏ' ବୋଲି କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବହିଛାପିଲେ । ସେ ବହିରେ କୁହାଗଲା ଯେ ଓଡ଼ିଆ ବଙ୍ଗଳାର ଗୋଟିଏ ଉପଭାଷା । ତାକୁ ଅପ୍ରମାଣିତ କରିବାକୁ ଯାଇ ମଧୁସୂଦନ ରାଓ ଗୋଟିଏ ରାତି ଭିତରେ ବର୍ଣ୍ଣବୋଧ ଲେଖିଥିଲେ । ରାଧାନାଥ ରାୟ ବଙ୍ଗଳାରେ ଲେଖା ଛାଡ଼ି ଦେଇ ଓଡ଼ିଆରେ ଲେଖିଲେ ଏବଂ ଶ୍ରେଷ୍ଠ କବି ହୋଇଗଲେ । ଫକୀରମୋହନ ସେନାପତି ଉପନ୍ୟାସ ଲେଖି ଶ୍ରେଷ୍ଠ ଔପନ୍ୟାସିକ ହେଲେ । ବଙ୍କିମଚନ୍ଦ୍ର ଉପନ୍ୟାସଠାରୁ ଫକୀର ମୋହନଙ୍କ ଉପନ୍ୟାସ ଅଧିକ ଦରଦୀ । ବଙ୍କିମଚନ୍ଦ୍ର ତ ମଧ୍ୟବିତ୍ତ ପରିବାର କଥା ଲେଖିଛନ୍ତି, ରାଜାମାନଙ୍କ ପରିବାର କଥା ଲେଖିଛନ୍ତି । କିନ୍ତୁ ଫକୀରମୋହନ "ଛମାଣ ଆଠଗୁଣ୍ଠ"ରେ ସବୁଠୁ ଯିଏ ଗରିବ, ସର୍ବହରା ବୋଲି ଯାହାକୁ କୁହାଯାଏ, ସେମାନଙ୍କ ବିଷୟରେ ଲେଖିଛନ୍ତି । ଓଡ଼ିଆ ଭାଷାର ଶ୍ରେଷ୍ଠତ୍ୱ ସେତେବେଳେ ସେମାନେ ପ୍ରତିପାଦନ କରିଥିଲେ । କିନ୍ତୁ ଜାତିର ସ୍ୱାତନ୍ତ୍ର୍ୟ ପାଇଁ ସବୁଠାରୁ ଯିଏ ପ୍ରମୁଖ ଅଂଶ ଗ୍ରହଣ କରି ଲଢ଼ିଥିଲେ ସେ ହେଲେ ମଧୁସୂଦନ ଦାସ । ସମସ୍ତଙ୍କୁ ଏକାଠି କରି "ଉତ୍କଳ ସମ୍ମିଳନୀ" ୧୯୦୩ ମସିହାରେ ଗଢ଼ିଲେ । ଉତ୍କଳ ସମ୍ମିଳନୀ ହେଲା ସେତେବେଳେ ଓଡ଼ିଶାର ଆନ୍ଦୋଳନର ଏକ ଶାଣିତ ଅସ୍ତ୍ର । ଓଡ଼ିଆ ଜାତିର ଅଭିମାନକୁ ପ୍ରତିପାଦିତ କରିବା ପାଇଁ ମଧୁବାବୁ ତାଙ୍କର ସର୍ବସ୍ୱ ତ୍ୟାଗ କଲେ । ସେତେବେଳେ ସିଏ ସବୁଠାରୁ ବେଶୀ ରୋଜଗାର କରୁଥିଲେ ଓକିଲ ହୋଇ । ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରୁଥିଲେ, ଲକ୍ଷ ଲକ୍ଷ ଟଙ୍କା ଦାନ କରୁଥିଲେ । ଶେଷକୁ ନିଃସ୍ୱ ହୋଇ କରି ସେ ମଲେ । କିନ୍ତୁ ତାଙ୍କର ଯେଉଁ ସ୍ୱପ୍ନ ଥିଲା ତାକୁ ସେ ସାର୍ଥକ କରିଗଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ୧୯୩୬ ମସିହାରେ । ୧୯୩୪ ମସିହାରେ ମିଷ୍ଟର ଦାସଙ୍କର ଦେହାନ୍ତ ହେଲା । ଏହି ଜୀବନକାଳ ଭିତରେ ସେ ଗୋଟିଏ କଥା ପ୍ରମାଣିତ କରିଗଲେ ଯେ ଯେଉଁ ଓଡ଼ିଆ ଜାତିର ଏତେବଡ଼ ଗୌରବ ଥିଲା, ଯେଉଁ ଓଡ଼ିଆ ଜାତି ଏକ ମହାନ୍ ଜାତି ହିସାବରେ ଭାରତବର୍ଷରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲା, ସେ ଜାତି ଭିତରେ ବର୍ତ୍ତମାନ ମଧ୍ୟ ସେ ଶକ୍ତି ଅଛି । ସେହି ଅନ୍ତର୍ନିହିତ ଶକ୍ତି ବଳରେ ସେ ଜାତି ପୁଣି ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିପାରିବ । ସେ ତାରକସୀ କାମ ପାଇଁ, ଜୋତା ତିଆରି କରିବା ପାଇଁ ଅନୁଷ୍ଠାନ ଗଢ଼ିଲେ । ଜୋତା ତିଆରି କାରଖାନାର ଅବସ୍ଥା ଯେତେବେଳେ ଖରାପ ହୋଇଗଲା । ତାକୁ ଦେଖିବା ପାଇଁ ମହାତ୍ମା ଗାନ୍ଧୀ ନିଜେ ଆସିଥିଲେ । କାରିଗରମାନଙ୍କୁ ନେଇ ସେ ଯେଉଁ ତାରକସୀ କାମ କରେଇଲେ ଭାରତବର୍ଷରେ ପ୍ରମାଣିତ କଲେ ଯେ ଏଭଳି କାରିଗରୀ କାମ ଆଉ ଓଡ଼ିଶା ଛଡ଼ା ଭାରତବର୍ଷର କୌଣସି ରାଜ୍ୟରେ ହୁଏ ନାହିଁ । ବୋଧହୁଏ ବାଲିଦ୍ୱୀପରେ କିଛି ଅଛି । ମୁଁ ଯେତେବେଳେ ବାଲିଦ୍ୱୀପ ଯାଇଥିଲି ସେଠାରେ ଦେଖିଲି ଓଡ଼ିଶାର ତାରକସୀ କାମ ସହିତ ତୁଳନୀୟ ତାରକସୀ କାମ । କେହି କେହି କହନ୍ତି ଇଟାଲୀରେ ଅଛି । କିନ୍ତୁ ପୃଥିବୀରେ ତା'ର ତୁଳନୀୟ କାରୁକାର୍ଯ୍ୟ ନାହିଁ । ସେ ଯେଉଁ ଜୋତା ତିଆରି କରୁଥିଲେ ଟିକିଏ ଯଦି ଖୁଣ ସେଥିରେ ଦେଖୁଥିଲେ ତାକୁ ସେ ସମ୍ପୂର୍ଣ୍ଣ ଭାବରେ ଫିଙ୍ଗି ଦେଉଥିଲେ ।

କାରଣ ସେ ସବୁ ୟୁରୋପ, ଫ୍ରାନ୍ସ, ଇଂଲଣ୍ଡ କୁ ଯାଉଥିଲା । ଅତି ପ୍ରସିଦ୍ଧ ଥିଲା ତାଙ୍କର ଓଡ଼ିଶା ଟ୍ୟାନେରୀ । ସେ କହୁଥିଲେ ଯାହା ଏଠି ପ୍ରସ୍ତୁତ କରାଯିବ, ସେ ଶ୍ରେଷ୍ଠ ଭାବରେ ରହିବ । ଶ୍ରେଷ୍ଠତ୍ୱ ଛଡ଼ା ଆଉ କିଛି ନାହିଁ । ଏ ଥିଲା ତାଙ୍କ ଜୀବନର ସବୁଠାରୁ ବଡ଼ ସ୍ୱପ୍ନ । ଓଡ଼ିଆ ଜାତିକୁ ଏକୀକରଣ କରିବା ପାଇଁ ଓଡ଼ିଆ ଭାଷାକୁ ଏକ ଶ୍ରେଷ୍ଠ ଭାଷାରେ ପରିଣତ କରିବା ପାଇଁ ଏବଂ ଓଡ଼ିଆ ଜାତିର ସ୍ୱାଭିମାନକୁ ବଢ଼େଇବା ପାଇଁ ସେ ଯେଉଁ ଉଦ୍ୟମ କରିଛନ୍ତି ତା'ର ତୁଳନା ନାହିଁ । ଓଡ଼ିଆ ସ୍ୱାଭିମାନର ସୃଷ୍ଟି ଶ୍ରେଷ୍ଠ ପୂଜକଙ୍କ ପାଇଁ ମୁଁ ସ୍ଥିର କରିଛି ମଧୁସୂଦନ ଦାସଙ୍କର ଜନ୍ମଦିନକୁ "ସ୍ୱାଭିମାନ ଦିବସ" ରୂପେ ପାଳନ କରାଯିବ ।

ଆମେ ଆଜି ପ୍ରତିଜ୍ଞା କରିବା, ଯେଉଁ ସ୍ୱପ୍ନ ସେ ଓଡ଼ିଶା ସମ୍ପର୍କରେ ଦେଖୁଥିଲେ, ତାକୁ ଅଳ୍ପକାଳ ଭିତରେ ସାକାର କରିବା । ଆଜି ଓଡ଼ିଶାରେ ଗୋଟିଏ ନୁହେଁ ତିନି ତିନିଟା ବନ୍ଦର ହେବା ପାଇଁ ଯାଉଛି । ଗୋପାଳପୁର ଥିଲା ଏକଦା ପ୍ରାଚୀନ ଉତ୍କଳର ରାଜଧାନୀ ଦନ୍ତପୁର । ସେହି ଗୋପାଳପୁରରେ ଯେଉଁ ବନ୍ଦର ପ୍ରତିଷ୍ଠିତ ହେବା ପାଇଁ ଯାଉଛି ତାହା ଭାରତର ବୃହତ୍ତମ ବନ୍ଦର ଏବଂ ଏସିଆର ଏକ ଶ୍ରେଷ୍ଠ-ବନ୍ଦରରେ ପରିଣତ ହେବ । ଯେଉଁ ଚାନ୍ଦବାଲି ବନ୍ଦର ୧୯୩୦ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଉଥିଲା ଏକ କ୍ଷୁଦ୍ର ସ୍ତରରେ, ସେ ବନ୍ଦର ଏକ ବୃହତ୍ତର ବନ୍ଦରରେ ପରିଣତ ହେବା ପାଇଁ ଯାଉଛି । ଓଡ଼ିଶାର ଉପକୂଳରେ ପାରାଦ୍ୱୀପ, ଚାନ୍ଦବାଲି ଓ ଗୋପାଳପୁର ବନ୍ଦରକୁ କେନ୍ଦ୍ର କରି ଲକ୍ଷ ଲକ୍ଷ କୋଟି ଟଙ୍କାର କଳକାରଖାନା ଓଡ଼ିଶାକୁ ଆସିବା ପାଇଁ ଯାଉଛି । ସେଥିରେ ଅଛି ଇସ୍ପାତ୍ କାରଖାନା, ଆଲୁମିନିୟମ କାରଖାନା, ତୈଳ ବିଶୋଧନାଗାର । ତେଣୁ ମଧୁସୂଦନଙ୍କର ଯୋଗ୍ୟ ଦାୟାଦ ନାହାନ୍ତି ଏକଥା କହିବା ଆମ ପକ୍ଷରେ ହୀନମନ୍ୟତା ହେବ । ମଧୁସୂଦନଙ୍କର ଯୋଗ୍ୟ ଦାୟାଦ ଭାବରେ ତାଙ୍କର ଲକ୍ଷ୍ୟକୁ ପୂରଣ କରିବା ହେଉଛି ଆମର ସ୍ୱପ୍ନ ଏବଂ ସଂକଳ୍ପ ।

(୧୯୯୮ ଏପ୍ରିଲ ୨୮ ମଧୁବାବୁଙ୍କ ୧୫୦ତମ ଜୟନ୍ତୀ ଉତ୍ସବରେ
ମୁଖ୍ୟମନ୍ତ୍ରୀଙ୍କ ପ୍ରଦତ୍ତ ଭାଷଣରୁ)

## ସର୍ଦ୍ଦାର ପଟେଲ୍ ହଲ୍‌କୁ 'ସ୍ମାରକୀ ହଲ୍' କରାଯିବ

ରାଜଧାନୀ ଭୁବନେଶ୍ୱରର ହୃଦ ନଗର ସୁନିର୍ଦ୍ଦିଷ୍ଟ ସର୍ଦ୍ଦାର ପଟେଲ୍ ହଲ୍‌କୁ ଏକ 'ସ୍ମାରକୀ ହଲ୍' କରାଯିବା ସଙ୍ଗେ ସଙ୍ଗେ ଏଠାରେ ଏକ ପାଠାଗାର ଖୋଲାଯିବ ଏବଂ ଏହାର ପରିସରରେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍‌ଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରାଯିବ ବୋଲି ଗତ ଅଗଷ୍ଟ ୦୬ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ସ୍ଥିର କରାଯାଇଛି ।

ସର୍ଦ୍ଦାର ପଟେଲ୍ ହଲ୍‌ଠାରେ ଅନୁଷ୍ଠିତ ଏହି ବୈଠକରେ ସୂଚନା ଓ ଲୋକ ସମ୍ପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନେତ୍ରାନନ୍ଦ ମଲ୍ଲିକ, ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ସ୍ୱରାଷ୍ଟ୍ର ତଥା ସୂଚନା ଓ ଲୋକ ସମ୍ପର୍କ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ତାହୀର ରହ୍ଣ ହୋତା, ସର୍ବୋଚ୍ଚ ଯନ୍ତ୍ରୀ ଓ ପୂର୍ତ୍ତ ବିଭାଗ ଶାସନ ସଚିବ ଶ୍ରୀ ଜି. ବେହେରା, ମୁଖ୍ୟ ସ୍ଥପତି ଶ୍ରୀ ଗୋକୁଳ ଦାସ, ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର, ଇନ୍‌କୋର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଖ୍ରୁ ଏନ୍. ବେହେରା, ମୁଖ୍ୟ ସାଧାରଣ ପରିଚାଳକ ଶ୍ରୀ ଏସ୍. ମହାପାତ୍ର, ବିଶିଷ୍ଟ ଐତିହାସିକ ପ୍ରଫେସର ଡକ୍ଟର ଜଗନ୍ନାଥ ପଟ୍ଟନାୟକ, ବିନୋଦ କାନୁନ୍‌ଗୋ ଶିଳ୍ପ ଓ ଚାରୁ କଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀ ସି. ଏମ୍. ବିଶ୍ୱାଳ ପ୍ରମୁଖ ଯୋଗଦାନ କରି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

ଏହି ସ୍ମାରକୀ ହଲ୍‌ରେ ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟର ମୂଲ୍ୟବାନ୍ ପେଣ୍ଟିଂ ଓ ଏ ସମ୍ପର୍କିତ ବିବରଣୀ, ସ୍ୱାଧୀନତା ସଂଗ୍ରାମୀମାନଙ୍କର ଫଟୋ ଓ ବୈଶିଷ୍ଟ୍ୟ ଏବଂ ସେମାନଙ୍କର କାର୍ଯ୍ୟାବଳୀ ସମ୍ପର୍କିତ ସୂଚନା ପ୍ରଭୃତି ପ୍ରଦର୍ଶନ କରାଯିବ । ଏଠାରେ ପ୍ରତିଷ୍ଠିତ ହେବାକୁ ଥିବା ପାଠାଗାରରେ ଓଡ଼ିଶା ଇତିହାସ ଏବଂ ସ୍ୱାଧୀନତା ସଂଗ୍ରାମ ଉପରେ ଲିଖିତ/ପ୍ରକାଶିତ ସମସ୍ତ ପ୍ରକାର ପୁସ୍ତକ ରଖାଯିବା ସହିତ ଅନୁସନ୍ଧିତ୍ସୁ ଗବେଷକମାନେ ଏହି ପଢ଼ିବାର ବ୍ୟବସ୍ଥା କରାଯିବା ସମ୍ପର୍କରେ ବୈଠକରେ ଆଲୋଚନା କରାଯାଇଥିଲା ।

# କବିବର ସ୍ମରଣେ

ଶ୍ରୀ ଯଦୁନାଥ ଦାଶ ମହାପାତ୍ର



ସବୁ ଝରକାରେ ମୋର ତୁମେ ଆସି ଦେଖାଦିଅ
ନିଶାର୍ଦ୍ଧରେ, ଯେଉଁଠି ମୁଁ ରହିଲେ ବି
ହେଉ ବା କେଦାରପୁର, ବାମଣ୍ଡା ବା
ଚିଲିକା କୂଳ ଡାକବଙ୍ଗଳାରେ
ଅଥବା କଟକ ଛାଡ଼ି କାଳିଗଳି ମନ୍ଦିର ବେଢ଼ାରେ
ତୁମେ ଖାଲି ଦିଶ ମୋତେ ରୁଗ୍ଣଦେହେ
ପେଟ ଚିପି ବାମହାତେ ଚିନ୍ତାଗ୍ରସ୍ତ ବିଷଣ୍ଣ ମୁହଁରେ ।
ଓଡ଼ିଶାର ପ୍ରକୃତିରେ ନଦନଦୀ ପର୍ବତ ଶିଖରେ
ଦେବତାର ମନ୍ଦିରରେ ଚନ୍ଦ୍ରଭାଗା ସମୁଦ୍ର କୂଳରେ
ମହାନଦୀ ପଠାପରେ ବାରବାଟୀ ଦୁର୍ଗ ଅବା
କୌଶଲ୍ୟାଗଙ୍ଗରେ, ଆଜି ଏଇ ବହୁବର୍ଷ ପରେ
ମୁଁ ଦେଖୁଚି ସର୍ବତ୍ର ତୁମକୁ ସର୍ବକ୍ଷଣେ ସର୍ବମୁହୂର୍ତ୍ତରେ ।
କବିବର ରାଧାନାଥ ! କବିତାର ସୁଦକ୍ଷ ବିଜ୍ଞାଣୀ
ଓଡ଼ିଆ ଭାଷାକୁ ତୁମେ ଦେଇଥିଲ ମୃତ ସଞ୍ଜିବନୀ
ଓଡ଼ିଆ ଜାତିକୁ ତୁମେ ଦେଇଥିଲ କବିତାର ଭାଷା
ଜୀବନ୍ତ ତ କରିଥିଲ ଏ ଜାତିର ଅବଲୁପ୍ତ ଆଶା
ବ୍ୟାସକବି, ଭକ୍ତକବି ସଙ୍ଗେ ତୁମେ ରଚିଥିଲ ତ୍ରିବେଣୀ ସଙ୍ଗମ
ଗଡ଼ଗଡ଼ିଆ ପୋଖରୀ ଘାଟରେ ପ୍ରତିଟି ସନ୍ଧ୍ୟାରେ
ହେଉଥିଲା ଅପୂର୍ବ ମିଳନ.....

ତିନିଙ୍କର ହୃଦୟରୁ ଝରୁଥିଲା ଜାତିପ୍ରେମ ବିଶ୍ୱପ୍ରେମ ଅପୂର୍ବ ଝରଣା
ଆଜି ବହୁବର୍ଷ ପରେ ସେ ସବୁ ମୁଁ କରେ ସ୍ମରଣା ।
ତୁମେ ଆଜି ନାହଁ କବି, ଜଳିଅଛ ସତୀ ଚଉରାରେ
ମୁଁ ଦେଖୁଚି ଏ ଜାତିକୁ ସଭ୍ୟତାର ନୂଆ ଆଇନାରେ
ସେ ଦିନର ଜାତୀୟତା ଆଜି ହାୟ ହଜିଲାଣି କାହିଁ
ମହାଯାତ୍ରା, ଦରବାର ସମ୍ବଳିତ ତୁମ ଗ୍ରନ୍ଥାବଳୀ
କୀଟଦଂଷ୍ଟ୍ର ପୃଷ୍ଠାରେ ତାହାର ଦିଶେ ଖାଲି ତୁମ ଝାପ୍ସା ଛାଇ ।
ତୁମେ ଆଜି ସ୍ୱର୍ଗପୁରେ ଯେଉଁଠାରେ ମୃତ୍ୟୁନାହିଁ ଦହନ ବି ନାହିଁ
ଆମେ ଆଜି ପୃଥିବୀରେ ଯେଉଁଠାରେ ଅହର୍ନିଶ ମୃତ୍ୟୁର ତାଣ୍ଡବ
ସାଂସ୍କୃତିକ ଚେତନାର ଅବକ୍ଷୟ ଧାବମାନ ଅଶାନ୍ତିର ଅଶ୍ୱ
ଆଖି ବି ପରଳଗ୍ରସ୍ତ ପ୍ରେମାଞ୍ଜନ–ପାତ୍ର ଆଜି ଶୂନ୍ୟ
ସ୍ୱର୍ଗପୁରେ ଥାଇ ତୁମେ ତଳେ ଥରେ ଚାହିଁ ଦେଖ କବି
ତୁମରି ଆଶୀର୍ବାଦରେ ଏ ଜାତିର ମୁଖେ ଫୁଟୁ ହର୍ଷୋଲ୍ଲାସ ଛବି ।

ବିମାନପାଟୀ ଅଞ୍ଚଳ, ଭୁବନେଶ୍ୱର-୯

# ଶକ୍ତି ଆରାଧନା

**ଅଧ୍ୟାପିକା ଦୀପ୍ତିମୟୀ ଶତପଥୀ**

ଭାରତୀୟ ଆର୍ଯ୍ୟ ସମାଜରେ ଶକ୍ତି ପୂଜାର ପ୍ରଚଳନ ସମ୍ପର୍କରେ ସଠିକ ବିବରଣୀ ପ୍ରଦାନ କରିବା କଷ୍ଟସାଧ୍ୟ । କିନ୍ତୁ ଏହା ବିଶ୍ୱାସ ହୋଇଥାଏ ଯେ, ମାତୃଶକ୍ତିର ପୂଜା ସୃଷ୍ଟିର ଆରମ୍ଭରୁ ହିଁ ପ୍ରଚଳିତ । ସାଧାରଣତଃ ହିନ୍ଦୁମାନେ ଦୁଇଟି ଧାରାରେ ଦେବ-ଉପାସନା କରିଥାଆନ୍ତି । ଯଥାଃ-ବୈଦିକ ଓ ତାନ୍ତ୍ରିକ । ବୈଦିକ କ୍ରିୟାକାଣ୍ଡ ପୁରୁଷ ପ୍ରଧାନ । ତାନ୍ତ୍ରିକ ଉପାସନା ନାରୀକୁ ବିଶ୍ୱର ପ୍ରସୂତି ଓ ନିୟନ୍ତ୍ରୀର ଆସନରେ ଉପବିଷ୍ଟ କରାଏ ।

ଦେବୀ ସ୍ୱୟଂ ସୃଷ୍ଟିକର୍ତ୍ତ୍ରୀ, ପାଳନକର୍ତ୍ତ୍ରୀ ଓ ସଂହାରକର୍ତ୍ତ୍ରୀଙ୍କର ଆଦିମାତା । ଦେବୀଙ୍କର ବର୍ଣ୍ଣ କଳା । କଳାବର୍ଣ୍ଣ ଗୁଣାତୀତ ବା ଗୁଣହୀନ । କଳାବର୍ଣ୍ଣ ହିଁ ସମସ୍ତ ବର୍ଣ୍ଣର ମିଳନଶକ୍ତି । ଦେବୀଙ୍କର ଆଚ୍ଛାଦନ ନାହିଁ, ସେ ଦିଗମ୍ବରୀ । ଅର୍ଥାତ୍‌, ଦେବୀ ଦଶାଦି ମାୟାଠାରୁ ଊର୍ଦ୍ଧ୍ୱରେ । ଦେବୀ ନିତ୍ୟଯୌବନା, ତାଙ୍କ ସ୍ୱରୂପରେ ପରିବର୍ତ୍ତନ ପରିଲକ୍ଷିତ ହୁଏନାହିଁ । ଦେବୀଙ୍କଠାରେ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିର ପରାକ୍ରମ ରହିଛି । ସେ ତିନିଲୋକର ଆହାରଦାତ୍ରୀ, ସମଗ୍ର ଜଗତର ଅଧୀଶ୍ୱରୀ, ବିଶ୍ୱବ୍ରହ୍ମାଣ୍ଡରେ ତାଙ୍କର ବ୍ୟାପ୍ତି ଓ ଦ୍ୟୁଲୋକରେ ତାଙ୍କର ସୀମାହୀନ ବିସ୍ତୃତି । ଦେବୀ ଚିଦ୍‌ବ୍ରହ୍ମ ସ୍ୱରୂପିଣୀ ; ପଞ୍ଚମହାଭୂତ ଯଥା–ପୃଥ୍ୱୀ, ଜଳ, ତେଜ, ବାୟୁ ଓ ଆକାଶ ତାହାଙ୍କଠାରୁ ଉତ୍ପତ୍ତି ହୋଇ ତାହାଙ୍କଠାରେ ଲୀନ ହୁଏ ।

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ବେଳକୁ ଦେବୀ ଉପାସନାର ଧାରା ସମାଜରେ ପ୍ରବାହିତ ହେବାକୁ ଲାଗିଲା । ଦେବୀ ଏକ, କିନ୍ତୁ ବିଭିନ୍ନ ରୂପରେ ପୂଜିତ ହେଲେ । ଦେବୀଙ୍କୁ ବ୍ରହ୍ମା, ମହେଶ୍ୱର, ଇନ୍ଦ୍ର, ବିଷ୍ଣୁ, କୁମାର, ଭାସ୍କର, ବିନାୟକ ଓ ବିଧୁଙ୍କ ସମ୍ପର୍କରେ ଆଣି ସ୍ତ୍ରୀଲିଙ୍ଗୀକୃତ ଶବ୍ଦଦ୍ୱାରା ଅଷ୍ଟମହାଦେବୀ ରୂପେ ନାମିତ କରାଗଲା । ପୁରାଣଯୁଗରେ ଦେବୀଙ୍କୁ 'ଚଣ୍ଡୀ' ନାମରେ ଅଭିହିତ କରାଯାଉଥିଲା । ଚଣ୍ଡୀଙ୍କର ଦଶଟି ରୂପ ବା ଦଶମହାବିଦ୍ୟା ହେଲେ କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଓ କମଳା । କାଳୀ–ଜଗତର ମାତା, ଦୁଃଖବିନାଶିନୀ । ତାଙ୍କର ରୂପ ଭୟଙ୍କର । ସେ ମୁକ୍ତକେଶୀ, ଚତୁର୍ଭୁଜା, ପୀନପୟୋଧରା ଓ ଶ୍ୟାମାଙ୍ଗୀ । ତନ୍ତ୍ରଶାସ୍ତ୍ରାନୁସାରେ କାଳୀଙ୍କୁ ଦକ୍ଷିଣକାଳିକା, ସିଦ୍ଧକାଳିକା, ଭଦ୍ରକାଳିକା, ଶ୍ମଶାନକାଳିକା ଆଦି ନାମରେ ସ୍ମରଣ କରାଯାଇଥାଏ । କଳିଯୁଗରେ କାଳୀଙ୍କର ପ୍ରାଧାନ୍ୟ ମହତ୍ତ୍ୱପୂର୍ଣ୍ଣ । ତାରା–ସର୍ବସିଦ୍ଧିପ୍ରଦାୟିନୀ ଓ ମୋକ୍ଷଦାତ୍ରୀ । ସେ ଖର୍ବକାୟ, ମୁଣ୍ଡମାଳାବିଭୂଷିତା ଓ ଚତୁର୍ଭୁଜା । ପାନପାତ୍ରରେ ରୁଧିର ପାନରତା । ଷୋଡ଼ଶୀ ମହାବିଦ୍ୟା–ତ୍ରିଭୁବନ ସୁନ୍ଦରୀ । ଏହି ଦେବୀ ସୂର୍ଯ୍ୟକିରଣ ସଦୃଶ ଉଜ୍ଜ୍ୱଳ । ରକ୍ତପଦ୍ମରେ ଅଧିଷ୍ଠିତା ଓ ଚତୁର୍ଭୁଜ । ଭୁବନେଶ୍ୱରୀ–ଜ୍ୟୋତିର୍ମୟୀ, ତ୍ରିନୟନା ଓ ରକ୍ତବର୍ଣ୍ଣା । ସେ ଅଭୟବରଦାୟିନୀ । ଭୈରବୀ–ରକ୍ତବର୍ଣ୍ଣା, ତ୍ରିଲୋଚନା ଓ ସର୍ପଭୂଷିତା । ସେ ପରମଜ୍ଞାନର ଅଧିକାରିଣୀ । ମହାଦେବୀ ଛିନ୍ନମସ୍ତା–ମୁଣ୍ଡମାଳା ବିଭୂଷିତା, ଆଲୁଳାୟିତା, ବିସ୍ଫାରିତମୁଖା ଓ ଉଗ୍ରଜିହ୍ୱା । ଏହି ଦେବୀଙ୍କର ପ୍ରସାଦରୁ ଅସାଧ୍ୟ ସାଧନ ହୁଏ । ଅପୁତ୍ରିକ ପୁତ୍ରଲାଭ କରେ । ଧୂମାବତୀ–ଶତ୍ରୁ ବିନାଶିନୀ । ସେ ବିବର୍ଣ୍ଣା, ଦୀର୍ଘାଙ୍ଗୀ ଓ ବିଧବା । ମହାଦେବୀବଗଳା–ଗମ୍ଭୀରା, ଚତୁର୍ଭୁଜା, ପୀତବସନା । ମାତଙ୍ଗୀ–ବାକ୍‌ସିଦ୍ଧିଦାୟିନୀ, ତ୍ରିନୟନା, ସ୍ମିତମୁଖୀ ଓ ରତ୍ନ ସିଂହାସନାରୂଢ଼ା । କମଳା–ଶେଷ ମହାବିଦ୍ୟା, ପଦ୍ମାସନା ଓ ବୈକୁଣ୍ଠବାସିନୀ ଲକ୍ଷ୍ମୀ ।

ପୁନଶ୍ଚ ଶିବଙ୍କ ସଂସ୍ପର୍ଶରେ ଆସି ଦେବୀ ଶିବାନୀ, ରୁଦ୍ରାଣୀ ଓ ଶର୍ବାଣୀ ନାମରେ ପୂଜିତ । ଶରୀରର କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଓ ଅସୂୟାରୁ ସପ୍ତମାତୃକାଙ୍କର ଉଦ୍ଭବ । ସେମାନେ ହେଲେ ଯୋଗେଶ୍ୱରୀ, ମାହେଶ୍ୱରୀ, ବୈଷ୍ଣବୀ, କୌମାରୀ, ବ୍ରହ୍ମାଣୀ, ଇନ୍ଦ୍ରାଣୀ ଓ ବାରାହୀ । ମତପାର୍ଥକ୍ୟ ହେତୁ ଏମାନଙ୍କୁ ଆବଶ୍ୟକସ୍ଥଳେ ଅଷ୍ଟମାତୃକା ବା ନବମାତୃକା ଭାବରେ ବର୍ଣ୍ଣନା କରାଯାଇଥାଏ ।

ବ୍ରହ୍ମମୟୀ ପ୍ରକୃତି ଆଦ୍ୟାଶକ୍ତି, ଆର୍ଯ୍ୟଋଷିଙ୍କ ଦ୍ୱାରା ପୂଜା ପାଉଥିଲେ । ଆଦ୍ୟାଶକ୍ତିଙ୍କ ଦର୍ଶନରେ ଦିବ୍ୟଜ୍ୟୋତି ଲାଭ ହୁଏ । ଯିଏ ଯେଉଁ ରୂପରେ ପୂଜା କଲେ ମଧ୍ୟ ଦେବୀ ଏକୀଭୂତା । ବିଶ୍ୱନିୟନ୍ତାଙ୍କର ସୃଜନୀ ହିଁ ଶକ୍ତି । ଶକ୍ତିର ବିସ୍ତାର ପ୍ରକୃତି । ପୃଥିବୀ ହେଉଛି ଅଦିତି ; ଆଦିତ୍ୟ ବା ସୂର୍ଯ୍ୟ ତାଙ୍କର ପୁତ୍ର । ପ୍ରାତଃ, ମଧ୍ୟାହ୍ନ ଓ ସନ୍ଧ୍ୟା ସମୟରେ ଦେବୀ ସରସ୍ୱତୀ, ଦୁର୍ଗା ଓ ଲକ୍ଷ୍ମୀଙ୍କର ତେଜ ପ୍ରକଟିତ । ଦୁର୍ଗାଙ୍କ ବାହନ ସିଂହ ଦିବସର ପ୍ରତୀକ ଓ ମହିଷାସୁର ରାତ୍ରିର ପ୍ରତୀକ । ଦୁର୍ଗା ହିଁ ମହାମାୟା । ତାଙ୍କର ରୂପ, ଗୁଣ ଅସୀମ, ସେ ବିଶ୍ୱରୂପା ।

ଦେବୀଙ୍କର ଆସନ ସଦାଶିବ । ସଦାଶିବ ବ୍ରହ୍ମଙ୍କ ପରମାବସ୍ଥା ଓ ଚିଦ୍‌ବ୍ରହ୍ମଙ୍କ ସ୍ୱରୂପାବସ୍ଥା ଉଭୟ ଏକ । ପରମ ଶିବଙ୍କର ଶକ୍ତି

ନିର୍ଗୁଣ ବ୍ରହ୍ମ ସଗୁଣ ହୋଇ ସୃଷ୍ଟି ପ୍ରକ୍ରିୟା କରାନ୍ତି । ଶିବଙ୍କଠାରୁ ଶକ୍ତି ପୃଥକ ହେଲେ 'ଶିବ' ଶବ ପ୍ରାୟ ହୁଅନ୍ତି । ଅର୍ଥାତ୍, ଜୀବ ଶିବଙ୍କ ଅଂଶବିଶେଷ ଓ ତହିଁରୁ ପ୍ରାଣଶକ୍ତିକୁ ବ୍ୟାହତ କଲେ ତାହା ଶବ ସମାନ । ବ୍ରହ୍ମା,' ବିଷ୍ଣୁ, ରୁଦ୍ର, ଇନ୍ଦ୍ର ଆଦି ଶକ୍ତିଯୁକ୍ତ ହେଲେ ହିଁ ନିଜ । ନିଜର କାର୍ଯ୍ୟ କରିବାକୁ ସକ୍ଷମ ହୁଅନ୍ତି । ସ୍ତୁତି କରାଯାଉଥିବା ସମସ୍ତ ଦେବତା ଲୋକୋତ୍ତର ଶକ୍ତିବିଶେଷର ପ୍ରତିନିଧି । ତେଣୁ ଶକ୍ତି ହିଁ ସମସ୍ତ ପ୍ରକ୍ରିୟାର ମୂଳାଧାର । ସ୍ୱୟଂ ନାରାୟଣ ଏହି ଶକ୍ତିର ମାୟାରେ ଆବଦ୍ଧ । ଏହି ଶକ୍ତି କେତେବେଳେ ନାରୀ, କେତେବେଳେ ପୁରୁଷ । ମହାମାୟା ଦୁର୍ଗା ଜଗତକୁ ଧାରଣ କରିଛନ୍ତି । ସେ ଉଭୟ ଜଗଦ୍ଧାତ୍ରୀ ଓ ପ୍ରଳୟକାଳରେ ଜଗତ୍‌ସଂହାରିଣୀ ।

ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିରରେ ଶକ୍ତିଙ୍କ ପ୍ରାଧାନ୍ୟ ଅଧିକ । ଚଣ୍ଡୀଙ୍କର ତିନୋଟି ଚରିତ ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ରୂପେ ଯଥାକ୍ରମେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କୁ ସୂଚିତ କରାଯାଏ । ସୁଦର୍ଶନ କ୍ଷେମେଶ୍ୱରୀଙ୍କ ପ୍ରତୀକ । ଜଗନ୍ନାଥଙ୍କୁ ମଧ୍ୟ ମହାଶକ୍ତିଙ୍କର ଅପୂର୍ବ ରୂପ ବୋଲି ଜ୍ଞାନ କରାଯାଏ । ଶ୍ରୀଜଗନ୍ନାଥଙ୍କର ନୈବେଦ୍ୟ ବିମଳାଙ୍କୁ ଅର୍ପଣ କରାନଯିବା ପର୍ଯ୍ୟନ୍ତ ତାହା ମହାପ୍ରସାଦ ପଦବାଚ୍ୟ ହୁଏ । ବ୍ୟାପକ ଅର୍ଥରେ ମହାମାୟା ବା ମହାଶକ୍ତିଙ୍କୁ କରୁଣାମୟୀ ଜନନୀ ରୂପେ ପୂଜା କରିବା ଆଧ୍ୟାତ୍ମିକ ପରମ୍ପରାର ପରମ ସାଧନ । ଓଡ଼ିଶାରେ ଶକ୍ତିପୂଜାର ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ । 'ଗ୍ରାମଦେବତୀ' ଶବ୍ଦ ଏହାର ଏକ ନାମାନ୍ତର/ରୂପାନ୍ତର ମାତ୍ର ।

ସଚରାଚର ବ୍ରହ୍ମାଣ୍ଡର ସୃଷ୍ଟି, ପାଳନ ଓ ସଂହାର କାର୍ଯ୍ୟ ମହାଶକ୍ତିର ପ୍ରଭାବରେ ସଂଗଠିତ । ଶକ୍ତି ହିଁ ସୃଷ୍ଟି, ସ୍ଥିତି ଓ ବିଳୟର ମୂଳସ୍ୱରୂପା । ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ଆରାଧ୍ୟା, ସଂସାରର ଆଦିମାତା ।

---

ଖଣ୍ଡପଡ଼ା ରୋଡ଼,
ନୟାଗଡ଼-୭୫୨୦୬୯

## ସୁନା ଖଣିର ସନ୍ଧାନ ପାଇଁ ଚୁକ୍ତିପତ୍ର ସ୍ୱାକ୍ଷରିତ

କେନ୍ଦୁଝର ଜିଲ୍ଲାର ଡେଲକୋର ଅଞ୍ଚଳରେ ୧୨୦ ବର୍ଗ କିଲୋମିଟର ଅଞ୍ଚଳରେ ସୁନା ଖଣିର ସନ୍ଧାନ ପାଇଁ ଅଷ୍ଟ୍ରେଲିଆର ଓମାଏର୍ ଗୋଲ୍ଡ ମାଇନ୍ସ କମ୍ପାନୀ ଓ ଓଡ଼ିଶା ଖଣି ନିଗମ ଭିତରେ ଏକ ଚୁକ୍ତି ସ୍ୱାକ୍ଷରିତ ହୋଇଛି । ଓମାଏର୍ ଗୋଲ୍ଡ ମାଇନ୍ସର ନିର୍ଦ୍ଦେଶକ ମିଷ୍ଟ ଜେଡ୍ ଲାଟ ଖାପୁ ଓ ଓଡ଼ିଶା ଖଣି ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଜଗଦୀଶ ପ୍ରସାଦ ଦାଶ ଗତ ଅଗଷ୍ଟ [illegible] ତାରିଖରେ ମୁଖ୍ୟମନ୍ତ୍ରୀଙ୍କ ସଚିବାଳୟସ୍ଥ ପ୍ରକୋଷ୍ଠରେ ଏହି ଚୁକ୍ତିରେ ସ୍ୱାକ୍ଷର କରିଛନ୍ତି । ଚୁକ୍ତି ସ୍ୱାକ୍ଷରିତ ହେଲାବେଳେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଶିଳ୍ପ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ, ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ଉନ୍ନୟନ କମିଶନର ତଥା ଖଣି ନିଗମର ଅଧ୍ୟକ୍ଷ ଶ୍ରୀ ସୁଧାଂଶୁ ମୋହନ ପଟ୍ଟନାୟକ ପ୍ରମୁଖ ଉପସ୍ଥିତ ଥିଲେ ।

ଚୁକ୍ତି ଅନୁଯାୟୀ ୩ ବର୍ଷ ମଧ୍ୟରେ ସମସ୍ତ ଅନୁସନ୍ଧାନ କାର୍ଯ୍ୟ ଅଷ୍ଟ୍ରେଲିଆର କମ୍ପାନୀ ଶେଷ କରିବ ଏବଂ ଏଥିପାଇଁ ବ୍ୟୟ ହେଉଥିବା ପ୍ରାୟ ୬ କୋଟି ଟଙ୍କା ଏହି ସଂସ୍ଥା ବହନ କରିବ । ସୁନା ଖଣିର ସନ୍ଧାନ ମିଳିଲେ ୨୦୦ କୋଟି ଟଙ୍କାର ସ୍ୱର୍ଣ୍ଣ ଉତ୍ତୋଳନ କାର୍ଯ୍ୟ ଓଡ଼ିଶା ଖଣି ନିଗମର ସହାୟତାରେ ସମ୍ପାଦିତ ହେବ । ଖଣି ନିଗମ ଏହି ଯୋଜନାରେ ଶତକଡ଼ା ୫୦ ଭାଗ ଅଂଶଧନ ବିନିଯୋଗ କରିବ ।

ସ୍ମରଣଯୋଗ୍ୟ ଯେ, ଓଡ଼ିଶାରେ ଗଚ୍ଛିତ ଥିବା ସୁନା ଓ ହୀରାର ସର୍ବେକ୍ଷଣ ପାଇଁ ରାଜ୍ୟ ସରକାର ୧୯୯୧ରେ ଅନେକ ଦେଶୀୟ ଓ ବିଦେଶୀୟ କମ୍ପାନୀଠାରୁ ଆବେଦନ ପ୍ରସ୍ତାବ ଗ୍ରହଣ କରିଥିଲେ ଏବଂ ବୈଷୟିକ ତଥା ଆର୍ଥିକ ମାନଦଣ୍ଡ ଭିତ୍ତିରେ ୭ଟି ବିଦେଶୀ ସଂସ୍ଥାକୁ ପଞ୍ଜୀକୃତ କରାଯାଇଥିଲା ।

ଏହି ଯୋଜନା ସଫଳ ହେଲେ ସୁନା ଓ ହୀରା ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ସାରା ପୃଥିବୀରେ ପ୍ରତିଷ୍ଠା ଲାଭ କରି ପାରିବ ।

# ମା' ବିରଜାଙ୍କର ଶାରଦୀୟ ପୂଜା ଓ ରଥଯାତ୍ରା

ଶ୍ରୀ ନାରାୟଣ ବାରିକ୍

ଯାଜପୁରରେ ଅଧିଷ୍ଠାତ୍ରୀ ଦେବୀ ବିରଜାଙ୍କର ପୀଠ ଓଡ଼ିଶାର ସର୍ବପ୍ରାଚୀନ ଶକ୍ତିପୀଠ । ମା' ବିରଜାଙ୍କର ପ୍ରତିଷ୍ଠାର ଇତିହାସ ଅଜ୍ଞାତ । ପୁରାଣ ମତରେ ଜଗତ୍‌ମାତା ବିରଜା ସୃଷ୍ଟିର ପ୍ରାରମ୍ଭରୁ ବୈତରଣୀ ତଟରେ ସ୍ୱୟଂ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠିତ । ଦେବୀଙ୍କର ନାମାନୁସାରେ ଯାଜପୁର ବିରଜା କ୍ଷେତ୍ରଭାବେ ଯୁଗ ଯୁଗ ଧରି ପ୍ରସିଦ୍ଧି ଲାଭ କରିଆସିଛି । ମହାଦେବୀ ବିରଜା ଜଗତର ଆଦ୍ୟାଶକ୍ତି ରୂପେ କଳ୍ପିତା । ତନ୍ତ୍ର ମତରେ ବିରଜା କ୍ଷେତ୍ରରେ ଦେବୀ ସତୀଙ୍କର ନାଭି ପତିତ ହୋଇଥିଲା । ବିଭିନ୍ନ ପୁରାଣ ଓ ତନ୍ତ୍ରଗ୍ରନ୍ଥରେ ଶକ୍ତିକ୍ଷେତ୍ର ଓ ତନ୍ତ୍ରପୀଠ ରୂପେ ଯାଜପୁରକୁ ପ୍ରାଧାନ୍ୟ ଦିଆଯାଇଛି । ତନ୍ତ୍ର ଜଗତର ପ୍ରଥମ ପୀଠ ରୂପେ ସ୍ୱୀକୃତ ଓଡ୍ଡୀୟାନ ପୀଠ ଓଡ଼ିଶାର ବିରଜା ପୀଠ ବୋଲି କେତେକ ଆଲୋଚକ ମତ ପୋଷଣ କରନ୍ତି । ଗବେଷକମାନଙ୍କ ମତରେ ବୌଦ୍ଧଧର୍ମର ପ୍ରସିଦ୍ଧ ଓଡ୍ଡୀୟାନ ତନ୍ତ୍ରପୀଠ ପରବର୍ତ୍ତୀ କାଳରେ ଓଡ୍ର ବା ଉଡ୍ର ଦେଶଭାବେ ପରିଚିତ ହୋଇଥିଲା । ଦେବୀ ବିରଜାଙ୍କୁ ଏହି ଉଡ୍ରଦେଶର ପୀଠାଧୀଶ୍ୱରୀଭାବେ ବ୍ରହ୍ମଯାମଳ ସ୍ୱୀକାର କରିଛି । ଯଥା–

ରାମେଶ୍ୱରୀ ସେତୁବନ୍ଧେ ବିମଳା ପୁରୁଷୋତ୍ତମେ ।
ବିରଜା ଉଡ୍ରଦେଶେଚ କାମାକ୍ଷା ନୀଳପର୍ବତେ ।।

ଦେବୀ ବିରଜାଙ୍କୁ ନାଦ (ଚନ୍ଦ୍ରାକାର ଅର୍ଦ୍ଧମାତ୍ରା) ଓ ଜଗନ୍ନାଥଙ୍କୁ ବିନ୍ଦୁ ରୂପରେ କଳ୍ପନା କରାଯାଇଛି । ଯାଜପୁରର ବୈତରଣୀ ତଟରୁ ପୁରୀ ସମୁଦ୍ରକୂଳ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ନାଭିଦେଶ ବିରଜାକ୍ଷେତ୍ର ଭାବେ ଖ୍ୟାତି ଲାଭ କରିଥିଲା । ଏହି କ୍ଷେତ୍ରର ମୁଖ୍ୟ ଦେବୀ ବିରଜାଙ୍କୁ ମହାଦେବୀ ଓ ମୁଖ୍ୟ ଦେବତା ଶ୍ରୀଜଗନ୍ନାଥଙ୍କୁ ଭୈରବ ରୂପେ ଦେବୀ ଭାଗବତ ଗ୍ରହଣ କରିଅଛି ।

ଉତ୍କଳେ ନାଭିଦେଶେଚ ବିରଜାକ୍ଷେତ୍ର ମୁଚ୍ୟତେ ।
ବିରଜା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବ ।।

ଦେବୀ ବିରଜା ହେଉଛନ୍ତି ସିଂହବାହିନୀ, ଦ୍ୱିଭୁଜା, ଶୂଳଧାରିଣୀ, ମହିଷମର୍ଦ୍ଦିନୀ ଦୁର୍ଗା । ଦେବୀଙ୍କର ଏକ ଧ୍ୟାନରେ କୁହାଯାଇଛି–

ଶ୍ୟାମାଙ୍ଗୀ ସିଂହମାରୂଢ଼ାଂ ଦ୍ୱିଭୁଜା ଶୂଳଧାରିଣୀମ୍ ।
ବିଭ୍ରତୀଂ ବାମହସ୍ତେନ ମହିଷାସୁର ପୁଚ୍ଛକାମ୍ ।।
ସୁରାସୁରୈର୍ବନ୍ଦ୍ୟମାନାଂ ତ୍ରିନେତ୍ରୀ ମିନ୍ଦୁଶେଖରାମ୍ ।
ସର୍ବାଭରଣ ସମ୍ପନ୍ନାଂ ଭକ୍ତାନୁଗ୍ରହକାରିଣୀମ୍ ।
ବନ୍ଦେ ଶ୍ରୀବିରଜାଂ ଦେବୀଂ ଭୁକ୍ତିମୁକ୍ତି ପ୍ରଦାୟିନୀମ୍ ।।

ଦେବୀ ବିରଜାଙ୍କର ଶିଳା ବିଗ୍ରହ ଭାରତରେ ଆଦିତମ ମହିଷମର୍ଦ୍ଦିନୀ ବିଗ୍ରହ ବୋଲି ମୂର୍ତ୍ତିତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି । ତେଣୁ ସମଗ୍ର ଭାରତବର୍ଷରେ ଯାଜପୁର ମହିଷମର୍ଦ୍ଦିନୀ ଦେବୀ ଦୁର୍ଗାଙ୍କର ଉପାସନାର ପ୍ରାଚୀନତମ କେନ୍ଦ୍ର ରୂପେ ନିର୍ଦ୍ଧାରିତ ହୋଇଥାଏ । ଦେବୀ ବିରଜାଙ୍କ ପୀଠରେ ପ୍ରତିବର୍ଷ ଶାରଦୀୟ ପୂଜା ଉତ୍ସବ ମହା ଆଡ଼ମ୍ବରରେ ପାରମ୍ପରିକ ବିଧି ଅନୁସାରେ ଆଶ୍ୱିନ ମାସ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଆରମ୍ଭ ହୋଇ ଆଶ୍ୱିନ ଶୁକ୍ଳ ଦଶମୀ ତିଥିରେ ସମ୍ପୂର୍ଣ୍ଣ ହୋଇଥାଏ । ଷୋହଳ ଦିନ ବ୍ୟାପୀ ଏହି ପୂଜା ଉତ୍ସବରେ ରାତ୍ରିକାଳୀନ ପୂଜାର ଗୁରୁତ୍ୱ ଓ ପ୍ରସିଦ୍ଧି ଥିବାରୁ ଏହା ଦେବୀଙ୍କର ଷୋଡ଼ଶ ରାତ୍ରି ପୂଜା ବୋଲି କୁହାଯାଏ ।

ଶାରଦୀୟ ଦୁର୍ଗା ପୂଜା ପୂର୍ବରୁ ବିରଜା ମନ୍ଦିରରେ ଭାଦ୍ର ମାସ ଶୁକ୍ଳପକ୍ଷ ଅଷ୍ଟମୀ ଦିନ ଦେବୀ ବିରଜାଙ୍କର ଶୟନୋତ୍ସବ ଓ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ପାର୍ଶ୍ୱ ପରିବର୍ତ୍ତନ ପୂଜାନୀତିମାନ ପାଳିତ ହୋଇଥାଏ । ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ଦିନ ଦେବୀ ଜାଗ୍ରତ ହୁଅନ୍ତି । ଏହି ଦିନ ପ୍ରାତଃ କାଳରେ ଦେବୀଙ୍କୁ ବିଧିପୂର୍ବକ ପୂଜା କରି ଶଯ୍ୟାରୁ ଉଠାଇବାକୁ ହୁଏ । ବିବିଧ ମଙ୍ଗଳବାଦ୍ୟ ବାଦଣା ମଧ୍ୟରେ ଦେବୀଙ୍କ ଶ୍ରୀଅଙ୍ଗରେ ସୁଗନ୍ଧ ତୈଳ, ହରିଦ୍ରା ଆଦି ଲେପନ କରି ତୀର୍ଥ ଜଳରେ ସ୍ନାନ ସମାହିତ ହୋଇଥାଏ । ଏଠିକାର ପ୍ରଥା ଅନୁସାରେ ମୂଳାଷ୍ଟମୀଠାରୁ ମହାନବମୀ ପର୍ଯ୍ୟନ୍ତ ସ୍ଥାନୀୟ କେତେକ ବ୍ରାହ୍ମଣୀ ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ବୈତରଣୀର ଦଶାଶ୍ୱମେଧ ଘାଟରେ ସ୍ନାନ କରି ନିଜ ନିଜର ଜଳ କୁମ୍ଭରେ ବୈତରଣୀ ନଦୀରୁ ଓ ଅନ୍ୟ ତୀର୍ଥମାନଙ୍କରୁ ଜଳ ନେଇ ବିରଜା ମନ୍ଦିରକୁ ଆସନ୍ତି । ସେହି ସଂଗୃହୀତ ତୀର୍ଥ ଜଳରେ ଦେବୀଙ୍କର ସ୍ନାନ କରାଯାଏ । ପ୍ରାତଃ ସ୍ନାନ ସମାରୋହ ପରେ ଦେବୀଙ୍କୁ ଚନ୍ଦନ ଲାଗି ଓ ବସ୍ତ୍ର, ଅଳଙ୍କାର, ପୁଷ୍ପମାଲ୍ୟାଦିରେ ଭୂଷିତ କରି ତାନ୍ତ୍ରିକ ବିଧିରେ ଷୋଡ଼ଶ ଉପଚାରରେ ପୂଜା କରାଯାଏ । ଷୋଡଶ ରାତ୍ରି ପୂଜା ଅବସରରେ ଦେବୀଙ୍କର ସିଂହାସନର ସାଜସଜ୍ଜା ଅତ୍ୟନ୍ତ ଚିତ୍ତାକର୍ଷକ ଓ ଦର୍ଶନୀୟ ।

ମା' ବିରଜା ଷୋଡଶ ରାତ୍ରି ପୂଜା କାଳରେ ମାହେଶ୍ୱରୀ ରୂପରେ ପୂଜା ପାଆନ୍ତି । ମୂଳାଷ୍ଟମୀଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ବନଦୁର୍ଗା ମନ୍ତ୍ରରେ, ମହାଷ୍ଟମୀ ନିଶାର୍ଦ୍ଧରୁ ପ୍ରଭାତ ପର୍ଯ୍ୟନ୍ତ ଉଗ୍ରଚଣ୍ଡୀ ମନ୍ତ୍ରରେ, ମହାନବମୀରେ ମହାମାରୀ ମନ୍ତ୍ରରେ ଏବଂ ଦଶହରା ଦିନ ଅପରାଜିତା ମନ୍ତ୍ରରେ ଦେବୀଙ୍କର ପୂଜା କରାଯାଏ । ଶକ୍ତି ପଞ୍ଚକ

ତନ୍ତ୍ରୋକ୍ତ ବିଧାନରେ ଏହି ଶାରଦୀୟ ପୂଜା ଉତ୍ସବ ସମାହିତ ହୁଏ । କର, ପାଣି ଓ ପାଣିଗ୍ରାହୀ ସଂଜ୍ଞକ ବ୍ରାହ୍ମଣ ସେବାୟତମାନେ ପାଳି ଅନୁସାରେ ପୂଜାର ବିଭିନ୍ନ କାର୍ଯ୍ୟ କରିଥାନ୍ତି । ଯାଜପୁରର ବ୍ରାହ୍ମଣ ଶାସନର ପଣ୍ଡିତମାନେ ବରଣୀ ହୋଇ ପୂଜା କାର୍ଯ୍ୟରେ ଅଂଶ ଗ୍ରହଣ କରନ୍ତି । ଯାଜପୁରର ଧର୍ମାଧିକାରୀ ପତିମିଶ୍ର ସଂଜ୍ଞକ ବିଶିଷ୍ଟ ବ୍ରାହ୍ମଣ ପଣ୍ଡିତ ପୁଷ୍ପକାଚାର୍ଯ୍ୟ ଭାବେ ଷୋଡ଼ଶ ରାତି ପୂଜା କାର୍ଯ୍ୟ ପରିଚାଳନା କରିଥାନ୍ତି ।

ମୂଳାଷ୍ଟମୀ ଦିନ ରାତିରେ ବିରଜା ମନ୍ଦିରରେ ମୁଗୁନିରେ ମଣ୍ଡଳ କରି ଗଣପତିଙ୍କ ଘଟ ସହିତ ନବଦୁର୍ଗାଙ୍କ ପ୍ରତୀକାତ୍ମକ ନଅଗୋଟି କଳସ ସ୍ଥାପିତ ହୋଇ ପୂଜା ଆରମ୍ଭ ହୁଏ । ସେହି ଦିନଠାରୁ ମହାନବମୀ ପର୍ଯ୍ୟନ୍ତ ଷୋଳ ଦିନରେ ଷୋଳଗୋଟି ଘଟ ସ୍ଥାପିତ ହୁଏ ଓ ପ୍ରତ୍ୟହ ସକାଳ ଓ ରାତି ସମୟରେ ଦେବୀଙ୍କ ସିଂହାସନ ଏବଂ ନବଦୁର୍ଗାଙ୍କ କଳସ ପାଖରେ ତାନ୍ତ୍ରିକ ବିଧିରେ ପୂଜା କରାଯାଏ । ଆଶ୍ୱିନ ଶୁକ୍ଳ ପଞ୍ଚମୀ ସନ୍ଧ୍ୟାରେ ବ୍ରାହ୍ମଣ ପଣ୍ଡିତମାନେ ଅଗ୍ନିସଂସ୍କାର କରି ହୋମ କର୍ମ ଆରମ୍ଭ କରନ୍ତି । ଅଗ୍ନିସଂସ୍କାର ବିଧାନରେ ଗଣପତି, ବ୍ରହ୍ମା, ଶିବ, ବିଷ୍ଣୁ ଓ ଅନନ୍ତଙ୍କର ପ୍ରତୀକାତ୍ମକ ପଞ୍ଚ କଳସ ସ୍ଥାପନା କରାଯାଇ ପୂଜା ହୁଏ ଏବଂ ହୋମ କର୍ମରେ ମହାଷ୍ଟମୀ ଦିନ ପର୍ଯ୍ୟନ୍ତ ସହସ୍ର ସଂଖ୍ୟକ ଆହୁତି ପ୍ରଦାନ କରାଯାଏ । ମହାଷ୍ଟମୀ ରାତିରେ ମହାହୋମ ସମୟରେ ଭକ୍ତଜନମାନେ ଉପବାସରେ ଥାଇ, ମନକାମନା ପୂର୍ଣ୍ଣ ପାଇଁ ଗୁଆ ବସାଇ, ହାତରେ ଛଡ଼ା ନଡ଼ିଆଟିମାନ ଧରି ଭକ୍ତିପୂର୍ଣ୍ଣ ଚିତ୍ତରେ ବସି ରହନ୍ତି ହୋମ ପାଖରେ । ହୋମ ଶେଷରେ ନଡ଼ିଆ ଅର୍ପଣ କରନ୍ତି ହୋମ କୁଣ୍ଡରେ । ହୋମକୁଣ୍ଡରେ ଶତ ଶତ ସଂଖ୍ୟାରେ ନଡ଼ିଆ ପକାଇବାର ଦୃଶ୍ୟ ଉପଭୋଗ୍ୟ ।

ମହାଷ୍ଟମୀ ଦିନ ଯାଜପୁର ମାଳଥାନପୁରରୁ ବଡ଼ପଣ୍ଡା ଆସି ଦେବୀ ବିରଜାଙ୍କର ଦର୍ଶନ କରନ୍ତି । ପୂଜକ ବ୍ରାହ୍ମଣମାନେ ବଡ଼ପଣ୍ଡାଙ୍କ ମଥାରେ ଶିଖିପା ବାନ୍ଧି ବଳି ପାଇଁ ଅନୁମତି ଲୋଡ଼ନ୍ତି । ମହାଷ୍ଟମୀ ନିଶାର୍ଦ୍ଧ ପୂଜା ଆରମ୍ଭ ପୂର୍ବରୁ ସେବାୟତ ବ୍ରାହ୍ମଣମାନେ ନିଜ ଭିତରେ ଥଟ୍ଟା ତାମସା ହେବା କୌତୂହଳପୂର୍ଣ୍ଣ । ବୋଧହୁଏ ଦେବୀଙ୍କ ଶାରଦୀୟ ପୂଜାରେ ସକାଳଠାରୁ ରାତି ପର୍ଯ୍ୟନ୍ତ ଖଟଣିର ଶ୍ରମ ଲାଘବ ପାଇଁ ଏପରି ଆମୋଦ ଦାୟକ ପରିବେଶ ସୃଷ୍ଟି କରାଯାଏ । ମହାଷ୍ଟମୀ ସନ୍ଧିପୂଜାରେ ଏକ ଘଟ ସ୍ଥାପନ କରାଯାଇ ଉଗ୍ରଚଣ୍ଡୀଙ୍କୁ ଆରାଧନା କରାଯାଏ ଏବଂ କୁଷ୍ମାଣ୍ଡ ବଳି ସହ ଗୋଟିଏ ଛାଗବଳି ଅର୍ପଣ କରାଯାଏ । ଏହି ଛାଗବଳି ଜଣେ ପୂଜକ ବ୍ରାହ୍ମଣଙ୍କ ଦ୍ୱାରା ସମାହିତ ହୁଏ । ଦେବୀ ବିରଜାଙ୍କର ମହାଷ୍ଟମୀ ରାତି ସ୍ନାନକୁ ମହାସ୍ନାନ କୁହାଯାଏ । ଏହାପରେ ଦେବୀଙ୍କୁ ଅଧର ପଣା ନୈବେଦ୍ୟ ଦିଆଯାଇ ଅନ୍ୟାନ୍ୟ ପୂଜା କାର୍ଯ୍ୟ ସଂପନ୍ନ ହୁଏ । ଆଶ୍ୱିନ ଶୁକ୍ଳ ପ୍ରତିପଦ ଦିନଠାରୁ ମହାନବମୀ ପର୍ଯ୍ୟନ୍ତ ନଅଦିନ ଧରି ବିରଜା ମନ୍ଦିର ଚଣ୍ଡୀ ମଣ୍ଡପରେ ବ୍ରାହ୍ମଣ ପଣ୍ଡିତମାନେ ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ସପ୍ତଶତୀ ଚଣ୍ଡୀ ପାଠ କରନ୍ତି ।

ଶାରଦୀୟ ପୂଜା ଅବସରରେ ଦେବୀ ବିରଜାଙ୍କର ରଥଯାତ୍ରା ପ୍ରତିବର୍ଷ ମହା ସମାରୋହରେ ଅନୁଷ୍ଠିତ ହୁଏ । ପରମ୍ପରାକ୍ରମେ ଲୋକମାତା ବିରଜା ଲୋକ କଲ୍ୟାଣ ଅଭିପ୍ରାୟରେ ରଥଯାତ୍ରା କରୁଛନ୍ତି । ଭକ୍ତ ଜନତାର ରକ୍ଷା ପାଇଁ ରଥାରୂଢ଼ା ହୋଇ ଅଭୟ ଭାବ ଉଦ୍ରେକ କରୁଛନ୍ତି ସନ୍ତାନ ମନରେ । ଅଭୟ ଦାୟିନୀ, ଭକ୍ତିମୁକ୍ତି ପ୍ରଦାୟିନୀ, କଲ୍ୟାଣମୟୀ ମା' ବିରଜାଙ୍କର ଏହି ପବିତ୍ର ଓ ପ୍ରସିଦ୍ଧ ରଥଯାତ୍ରା ଉତ୍କଳର ମହିମାନ୍ୱିତ ପରମ୍ପରାର ଏକ ନିଦର୍ଶନ । ଦୁର୍ଗାପୂଜାରେ ଯାଜପୁର ବ୍ୟତୀତ ଭାରତର ଅନ୍ୟ କୌଣସି ଦେବୀ ପୀଠରେ ରଥଯାତ୍ରାର ବ୍ୟବସ୍ଥା ନାହିଁ । ଓଡ଼ିଶାରେ ଶକ୍ତି ଆରାଧନାର ଏହି ସ୍ୱତନ୍ତ୍ର ପରମ୍ପରା ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଛି । ତନ୍ତ୍ର ମତରେ ଓଡ଼ିଶାରେ ଦୁଇଟି ପ୍ରଧାନ ଶାକ୍ତ ପୀଠ ହେଉଛି ପୁରୀର ବିମଳା ଓ ଯାଜପୁରର ବିରଜା ପୀଠ । ବିରଜା ଓ ବିମଳାଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ପୁଣି ମା' ବିମଳା ହିଁ ଦେବୀ ସୁଭଦ୍ରା । କୁହାଯାଏ ଦେବୀ ସୁଭଦ୍ରା ହେଉଛନ୍ତି ମା ବିରଜାଙ୍କର ପ୍ରତୀକ । ପୁରୀ ଜଗନ୍ନାଥ ମହାପ୍ରଭୁଙ୍କର ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା ଅବସରରେ ମାତା ସୁଭଦ୍ରିକା ରଥଯାତ୍ରା କରିଥାନ୍ତି ।

ମା' ବିରଜାଙ୍କର ରଥଯାତ୍ରା ଉପଲକ୍ଷେ ପ୍ରତିବର୍ଷ ଭାଦ୍ର ମାସରେ ସୁନିଆଁ ଦିନ ରଥ ନିର୍ମାଣ କାର୍ଯ୍ୟର ଶୁଭାରମ୍ଭ ହୁଏ । ଆବଶ୍ୟକ ଅନୁସାରେ ମହାରଣା ନିଯୁକ୍ତ ହୁଅନ୍ତି । ଉପବାସ ପାଳନ କରି ମୁଖ୍ୟ ବର୍ଦ୍ଧକୀ ଦେବୀଙ୍କ ଦର୍ଶନ ସହ ଆଜ୍ଞାମାଳ ଗ୍ରହଣ କରି ରଥ କାଠ ଉପରେ ନଡ଼ିଆ ଭାଙ୍ଗି ଅନୁକୂଳ ଚ୍ଛେଟ ଦିଅନ୍ତି । ଅଗରୁ ଚନ୍ଦନ, ଶ୍ୱେତ ଚନ୍ଦନ, ରକ୍ତ ଚନ୍ଦନ ଓ ପଳାସ ଇତ୍ୟାଦି କାଷ୍ଠରେ ଦେବୀଙ୍କ ରଥ ଗଠନର ବିଧି ଥିଲେ ମଧ୍ୟ ଏବେ ସେସବୁ ମୂଲ୍ୟବାନ କାଷ୍ଠର ଅଭାବରୁ ଶାଳ, କୁରୁମ, ଆସ ଫୁଟିଆ ଇତ୍ୟାଦି କାଠ ରଥ ନିର୍ମାଣରେ ବ୍ୟବହୃତ ହେଉଛି । ରଥ ତିଆରି ପାଇଁ ୭୫୩ ଖଣ୍ଡ କାଠ, ଲୁହା କଣ୍ଟା ଓ ସପୁଆଣି ଏବଂ ଅନ୍ୟାନ୍ୟ ସରଞ୍ଜାମ ଦରକାର ହୁଏ ।, ଦେବୀ ବିରଜାଙ୍କର ରଥର ନାମ ସିଂହଧ୍ୱଜ । କେହି କେହି ବିଜୟା ରଥ ବୋଲି କହିଥାନ୍ତି । ଏହା ମହାବିଷ୍ଣୁ ପ୍ରଦତ୍ତ । ବିରଜା ମନ୍ଦିରର ସମାନ ଉଚ୍ଚତା ବିଶିଷ୍ଟ ଦେବୀଙ୍କର ସିଂହଧ୍ୱଜ ରଥର ଉଚ୍ଚତା ୭୦ ଫୁଟ ୬ ଇଞ୍ଚ । ରଥର ବିଭିନ୍ନ ଅଂଶଗୁଡ଼ିକର ସ୍ୱତନ୍ତ୍ର ନାମ ରହିଛି । ରଥ ଦ୍ୱାଦଶ ଚକ ବିଶିଷ୍ଟ । ସେହି ଚକମାନଙ୍କର ସ୍ୱତନ୍ତ୍ର ନାମ ହେଉଛି–ଘୋଷିଣୀ, ବିଦ୍ୟୁନ୍ମାଳା, ପାତଙ୍ଗିନୀ, ବାୟୁବେଗିନୀ, ନାମଧେୟା, ଐନ୍ଦ୍ରୀ, ବୈଷ୍ଣବୀ, ଶଙ୍କରୀ, ମହତୀ, ଧ୍ରୁବା, ମୌନୀ ଓ ବ୍ରାହ୍ମୀ । ରଥରେ ଖଚିତ ପାଞ୍ଚଗୋଟି ଶ୍ୱେତ ବର୍ଣ୍ଣର ଅଶ୍ୱଙ୍କର ନାମ–ଅଗ୍ନି, ଖ୍ୟାତି, ସ୍ନିଗ୍ଧ, ନାମ ଓ ରୂପ । ରଥରେ ଲାଗିଥିବା ଦୁଇଗୋଟି ଛତ୍ରର ନାମ ସ୍ୱର୍ଣ୍ଣଚୂଡ଼ ଓ ଶଙ୍ଖଚୂଡ଼ । ସିଂହଧ୍ୱଜ ରଥର ସାରଥୀ ସ୍ୱୟଂ ବ୍ରହ୍ମଦେବ । ରଥ ରକ୍ଷିକା–ମହାମାୟା, ରଥ ଶକ୍ତି–ବ୍ରହ୍ମସ୍ୱରୂପିଣୀ, ଗନ୍ଧର୍ବ–ଚିତ୍ରସେନ, ରଥର ଦେବୀ–ଶ୍ରୀଦେବୀ ଓ ଭୂଦେବୀ । ରଥର ୨୪ ଜଣ ପାର୍ଶ୍ୱଦେବତା ଓ ଅଷ୍ଟ ପାର୍ଶ୍ୱଦେବୀ ରହିଛନ୍ତି । ଋଷିପଟାରେ ଅଗସ୍ତ୍ୟ ପ୍ରମୁଖ ଚବିଶି ଜଣ ଋଷି ବିଦ୍ୟମାନ ।

ରଥର ଅଷ୍ଟଦିଗର ରକ୍ଷା ଦେବୀମାନେ ହେଲେ ଲ  ୀ, ଧରା, ପୁଷ୍ଟି, ଗୌରୀ, ତୁଷ୍ଟି, ମେଧା, ସରସ୍ୱତୀ ଓ ପ୍ରଭା । ରଥରେ ଚ୍ୱମର ସେବା କରନ୍ତି ଦେବୀ ଅସିତା, ବଗଳା, ମାତଙ୍ଗୀ, ଭୁବନେଶ୍ୱରୀ ଚ୍ଛିନ୍ନମସ୍ତା, ଚଣ୍ଡୀ, ବାରାହୀ, ତିରସ୍କାରିଣୀ, ଶୁକ ଶ୍ୟାମଳା, ଲଘୁ ଶ୍ୟାମଳା, ପ୍ରତ୍ୟଙ୍ଗିରା, ଧୂମାବତୀ, ସାବିତ୍ରୀ, ସରସ୍ୱତୀ ଓ ବ୍ରହ୍ମାନନ୍ଦ କଳା । ରଥର ପ୍ରହରୀ ହେଉଛନ୍ତି ମିତ୍ର, ବରୁଣ, ଧାତା, ଅର୍ଯ୍ୟମା, ପୁଷ୍ଣ, ଭଗ, ଇନ୍ଦ୍ର ଓ ବିବସ୍ୱାନ । ରଥର ଶୀର୍ଷ ଦେବତା ଉଗ୍ର ନୃସିଂହ ମହାବିଷ୍ଣୁ । ରଥର ଧ୍ୱଜାଧିପତି ମହାତ୍ରିପୁରାସୁନ୍ଦରୀ । ଧାତୁ ନିର୍ମିତ ତ୍ରିକଳସର ନାମ–ଜାଗ୍ରତ ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ । ଅଷ୍ଟଧାତୁ ଚକ୍ରର ନାମ–ପରମ ବୈଷ୍ଣବୀ ଓ ରଥର ଧ୍ୱଜା ନାମ–ଚୈତନ୍ୟସତ୍ତା । ଏହି ରଥର ମୁଖ ବ୍ରହ୍ମାବର୍ତ୍ତା, ରଥ ପୀଠର ନାମ ଅପରାଜିତା, ଦ୍ୱାରସ୍ଥ କଳସର ନାମ ଇନ୍ଦ୍ର ଓ ପ୍ରଜାପତି । ଏହି ଦିବ୍ୟ ରଥର ନିର୍ମାତା ଆଦିବାକ୍ । ରଥ ମଣ୍ଡଣୀ ପାଇଁ କୃଷ୍ଣ, ଲୋହିତ ଓ ଶ୍ୱେତ ବର୍ଣ୍ଣର ସୂତା କନା ବ୍ୟବହୃତ ହୁଏ । ଦେବୀଙ୍କ ରଥରେ ବହୁବିଧ ଯୁଦ୍ଧ ଉପକରଣ, ଔଷଧ ଓ ଅନ୍ୟାନ୍ୟ ଆବଶ୍ୟକୀୟ ସାମଗ୍ରୀ ରଖାଯିବାର ବିଧି ରହିଛି ।

ଆଶ୍ୱିନ ଅମାବାସ୍ୟା ଦିନ ସିଂହଧ୍ୱଜ ରଥ ଅଧିବାସ ହୋଇ ପ୍ରତିପଦ ଦିନ ରଥ ପ୍ରତିଷ୍ଠା କରାଯାଏ । କଳସ ଓ ଧ୍ୱଜ ସ୍ଥାପିତ ହୋଇ ପୂଜା ହୋମ ରଥ ପ୍ରତିଷ୍ଠାର ସଂସ୍କାରାଦି କାର୍ଯ୍ୟ ହୋଇ ପୁଷ୍ପ ବର୍ଷକୀଙ୍କ ମଥାରେ ଶିରିପା ବନ୍ଧାଯାଏ । ଦେବୀ ବିରଜାଙ୍କ ପ୍ରତିଷ୍ଠିତ ଶିଳା ବିଗ୍ରହକୁ ସିଂହାସନଚ୍ୟୁତ ନକରି ତାଙ୍କର ଉତ୍ସବ ପ୍ରତିମାକୁ ନେଇ ରଥୋତ୍ସବ କରାଯାଏ । ପ୍ରତିପଦ ଦିନ ଛତ୍ର, ଚ୍ୱମର, ଆଲଟ, ତରାସର ଶୋଭା ମଧ୍ୟରେ ଶଙ୍ଖ, ଘଣ୍ଟା, ମୃଦଙ୍ଗ, କଂସାଳ, କାହାଳୀ ଇତ୍ୟାଦି ବାଦ୍ୟ ବାଜଣାରେ ମା' ବିରଜାଙ୍କର ବିଜେ ପ୍ରତିମା ଧାତବ ମୂର୍ତ୍ତି ମନ୍ଦିରରୁ ବାହାରି ସିଂହଦ୍ୱାର ନିକଟରେ ରଥାରୂଢ଼ ହୁଅନ୍ତି । ବିଧି ଅନୁସାରେ ପ୍ରତିପଦଠାରୁ ମହାନବମୀ ପର୍ଯ୍ୟନ୍ତ ନଅ ଦିନରେ ସିଂହଧ୍ୱଜ ରଥ ନଅଥର ମନ୍ଦିର ବେଢ଼ା ପରିକ୍ରମା କରିଥାଏ । ନଅ ସଂଖ୍ୟାଟି ଶାକ୍ତ ମତରେ ଶୁଭ । ଶାରଦା ତିଳକ ଅନୁସାରେ ନଅ ସଂଖ୍ୟାଟି ଶକ୍ତି ତତ୍ତ୍ୱ ଓ ମାହେଶ୍ୱରୀ ତତ୍ତ୍ୱ । ତେଣୁ ବିରଜା ଦେବୀ ରଥରେ ନଅ ଦିନ ଭ୍ରମଣ କରିଥାନ୍ତି । ଜାତି ଧର୍ମ ନିର୍ବିଶେଷରେ ଓ ବିପୁଳ ଉତ୍ସାହ ଉଦ୍ଦୀପନା ମଧ୍ୟରେ ରଥ ଟଣାଯାଏ । ମାଆର କରୁଣାରୁ କେହି ସନ୍ତାନ ବଞ୍ଚିତ ହୁଅନ୍ତି ନାହିଁ । ରଥ ଭ୍ରମଣ ସମୟରେ କେତେକ ସେବାୟତ ରଥ ଉପରେ ରଥ ବୋଲି ବା ପାର୍ବଣୀ ଡାକି ଭକ୍ତମାନଙ୍କୁ ରଥଟଣାରେ ଉତ୍ସାହିତ କରନ୍ତି । ମହାପାର୍ବଣରେ ଏହି ପାର୍ବଣୀ ଡାକ ଆଧ୍ୟାତ୍ମିକ ତତ୍ତ୍ୱ ଉପରେ ପର୍ଯ୍ୟବସିତ । ରଥ ଟଣା ସମୟରେ ଲୋକମାନେ ବହୁ ସଂଖ୍ୟାରେ ପାଣି କଖାରୁ ରଥ ଗତି ପଥରେ ଧାଡ଼ି ଧାଡ଼ି କରି ରଖନ୍ତି । ସେଗୁଡ଼ିକ ରଥ ଚକ ତଳେ ଚୁପି ହୋଇଯାଏ । ଏହାଦ୍ୱାରା ଆସୁରିକ ଶକ୍ତିର ବିନାଶ ହୁଏ ବୋଲି ଲୋକ ବିଶ୍ୱାସ ରହିଛି । ରଥ ଉପରେ ନଅ ଦିନ ଧରି ଷୋଡ଼ଶ ଉପଚାରରେ ଦେବୀଙ୍କର ପୂଜା ଓ ଚଣ୍ଡୀପାଠ କରାଯାଏ । ଅଗଣିତ ଭକ୍ତଜନ ରଥାରୂଢ଼ା ଦେବୀଙ୍କୁ ଦର୍ଶନ କରି ଭୋଗରାଗ ଓ ପୁଷ୍ପମାଲ୍ୟ ଅର୍ପଣ କରିଥାନ୍ତି । ରଥାରୂଢ଼ା ମା' ବିରଜାଙ୍କର ଦର୍ଶନରେ ପଞ୍ଚପାତକରୁ ମୁକ୍ତି ଲାଭ ସହ ଦେବୀପଦ ଲାଭ ହୁଏ ବୋଲି କପିଳ ସଂହିତାରେ ବର୍ଣ୍ଣିତ ଅଛି :–

> ଯେ ପଶ୍ୟନ୍ତି ରଥାରୂଢ଼ାଂ ଭ୍ରମନ୍ତି ମମ୍ବିକା ପୁନଃ ।
> ତେ ପଞ୍ଚପାତକୈର୍ମୁକ୍ତା ଯାନ୍ତି ତସ୍ୟାଃ ସ୍ୱରୂପତାମ୍ ॥

ମହାନବମୀ ଦିନ ରାତିରେ ଦେବୀ ସିଂହଧ୍ୱଜ ରଥରୁ ଅବତରଣ ପୂର୍ବକ ଏକ ସୁସଜ୍ଜିତ ବିମାନରେ ମହା ଆଡ଼ମ୍ବରରେ ଲାଖବିନ୍ଧା ପଡ଼ିଆକୁ ଯାତ୍ରା କରନ୍ତି । ସେଠାରେ ଦେବୀଙ୍କର ପ୍ରସିଦ୍ଧ ଲାଖବିନ୍ଧା ଉତ୍ସବ ଅନୁଷ୍ଠିତ ହୁଏ । ମହାମାରୀ ମନ୍ତ୍ରରେ ଦେବୀଙ୍କର ପୂଜା କରାଯାଇ ଚାରିଦିଗକୁ ଚାରିଗୋଟି ଶର ନିକ୍ଷେପ କରାଯାଏ । ଦେବୀଙ୍କର ଏହି ପ୍ରସିଦ୍ଧ ଲାଖବିନ୍ଧା ଉତ୍ସବ ପୌରାଣିକ କଳ୍ପନା ନୁହେଁ, ଐତିହାସିକ ସତ୍ୟର ସ୍ମାରକୀ । ଯାଜପୁର ଥିଲା ପ୍ରାଚୀନ ଉତ୍କଳର ରାଜଧାନୀ । ଭୌମକର ଓ ସୋମବଂଶୀ ରାଜାମାନେ ରାଜଧାନୀର ଏହି ସ୍ଥାନରେ ସୈନ୍ୟସାମନ୍ତଙ୍କର ଶରସନ୍ଧାନ ପରୀକ୍ଷା କରି ଉପାଧିମାନ ଦେବା ପାଇଁ ପ୍ରତିବର୍ଷ ଲକ୍ଷ୍ୟଭେଦ ଉତ୍ସବ ଆୟୋଜନ କରୁଥିଲେ । କାଳକ୍ରମେ ଏହି ସ୍ଥାନ ଲାଖବିନ୍ଧା ପଡ଼ିଆଭାବେ ପରିଚିତ ହୋଇ ଆସୁଛି । ଆଶ୍ୱିନ ଶୁକ୍ଳପକ୍ଷ ନବମୀରେ ଦେବୀ ବିରଜାଙ୍କର ବିଜେ ପ୍ରତିମାକୁ ପୂଜା କରି ଲକ୍ଷ୍ୟଭେଦ ଉତ୍ସବର ଉଦ୍‌ଯାପନ ଓ ଉପାଧି ପ୍ରଦାନ କରାଯାଉଥିଲା । ବିଜୟା ଦଶମୀରେ ଶତ୍ରୁନାଶ ଓ ବିଜୟ ପାଇଁ ରାଜା ଓ ସେନାପତିମାନେ ଦେବୀଙ୍କର ଆଶିଷ ଭିକ୍ଷା କରୁଥିଲେ । ସେହି ଲକ୍ଷ୍ୟଭେଦ ଉତ୍ସବ ଦେବୀ ପୂଜାର ଏକ ପରମ୍ପରା ହୋଇ ରହିଆସିଛି । ପ୍ରଥାନୁସାରେ ପୂଜକ ବ୍ରାହ୍ମଣ ଏବେ ମଧ୍ୟ ଲାଖବିନ୍ଧା ପଡ଼ିଆରେ ଚାରିଗୋଟି ଶର ନିକ୍ଷେପ କରୁଛନ୍ତି ଏବଂ ବିଜୟା ଦଶମୀରେ ବିରଜାଙ୍କ ପାଦପଦ୍ମରେ ଯବାଙ୍କୁର ଓ ଶମୀପତ୍ର ଅର୍ପଣ କରି କହୁଛନ୍ତି :–

> ଶମୀ ଶମୟତେ ପାପଂ ଶମୀ ଶତ୍ରୁନ୍ ବ୍ୟପୋହତି ।
> ଅର୍ଜୁନସ୍ୟ ଧନୁର୍ଦ୍ଧାରୀ ରାମସ୍ୟ ପ୍ରିୟଦର୍ଶନଃ ॥

ଲାଖବିନ୍ଧା ଉତ୍ସବ ଶେଷରେ ବିନା ବାଦ୍ୟରେ ଦେବୀଙ୍କୁ ଶୀଘ୍ର ଶୀଘ୍ର ମନ୍ଦିରରେ ବିଜେ କରାଇ ପୂଜକ ବ୍ରାହ୍ମଣମାନେ ମନ୍ଦିର ଦ୍ୱାର ବନ୍ଦ କରିଦିଅନ୍ତି । ପରେ ପରେ ମହାନବମୀ ରାତ୍ରି ପୂଜା ଅନୁଷ୍ଠିତ ହୁଏ ।

ଆଦ୍ୟରେ ଦେବୀ ବିରଜା ଏଠାରେ କୌଣସି ପ୍ରତୀକ ରୂପେ ଆର୍ଯ୍ୟେତରମାନଙ୍କ ଦ୍ୱାରା ପୂଜିତ ହେଉଥିଲେ । ଆଦି ପର୍ଯ୍ୟାୟରେ ଓଡ଼ିଶା ଥିଲା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ । ବ୍ରାତ୍ୟଭୂମି ରୂପେ ପରିଗଣିତ କଳିଙ୍ଗ ସେତେବେଳେ ଆର୍ଯ୍ୟମାନଙ୍କ ପାଇଁ ଥିଲା ନିଷିଦ୍ଧାଞ୍ଚଳ । ଦେବୀ ଉପାସକ ଆର୍ଯ୍ୟେତରମାନେ ଦେବୀ ପୂଜାରେ ମଣିଷ ବଳିର ପରମ୍ପରା ସୃଷ୍ଟି କରିଥିଲେ । ଦେବୀ ବିରଜା ବ୍ରାହ୍ମଣ ଧର୍ମର ଦେବୀଭାବେ ଗ୍ରହଣୀୟ ହେବା ପରେ ଆର୍ଯ୍ୟେତରମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ବହୁ ନୀତିକୁ

ଆର୍ଯ୍ୟମାନେ ଦେବୀ ପୂଜାରେ ଗ୍ରହଣ କରି ନେଇଛନ୍ତି । ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ମଧୁର ସମନ୍ୱୟରେ ଦେବୀଙ୍କ ମସ୍ତକରେ ଶୋଭାପାଉଛି ପାଞ୍ଚଗୋଟି ଚିହ୍ନ ବା ପଞ୍ଚମୁଦ୍ରା–ଗଣପତି, ନାଗ, ଯୋନି, ଲିଙ୍ଗ ଓ ଇନ୍ଦୁ ।

ଦେବୀ ବିରଜା ରଜଗୁଣରହିତା ଶୁଦ୍ଧ ସତ୍ତ୍ୱମୟୀ ପରମ ବୈଷ୍ଣବୀ । ମହାଷ୍ଟମୀ ନି ।ର୍ଦ୍ଧ ପୂଜାରେ ଛାଗବଳି ଓ ମହାନବମୀ ରାତି ମହିଷ ବଳି ସମୟରେ ଦେବୀଙ୍କର ଗର୍ଭମନ୍ଦିର ଦ୍ୱାର ବନ୍ଦ ରହେ । ବଳି ଶେଷରେ ଦ୍ୱାର ଉନ୍ମୁକ୍ତ କରାଯାଇ ଦେବୀଙ୍କୁ ଅଧରପଣା ଭୋଗ ଦିଆଯାଏ । ଦଶହରା ଦିନଟି ସର୍ବ ଶୁଭପ୍ରଦ ଦିବସ ଓ ଅପରାଜିତା ପୂଜା ଦିବସ ରୂପେ ବିଦିତ । ଏହି ଦିନ ଅପରାଜିତା ମନ୍ତ୍ରରେ ମା' ବିରଜା ପୂଜା ପାଆନ୍ତି । ଶାରଦୀୟ ପୂଜାରେ ଦେବୀଙ୍କର ବିଭିନ୍ନ ନୀତି ବହୁ ପରିବର୍ତ୍ତନର ଧାରା ଦେଇ ଗତି କରିଆସିଛି ।

ପିତୃପକ୍ଷରେ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ବିରଜା ମନ୍ଦିର ପରିସରରେ ଥିବା ପ୍ରସିଦ୍ଧ ନାଭିଗୟା ତୀର୍ଥରେ ପରମ୍ପରାକ୍ରମେ ଲୋକମାନେ ପିତୃପୁରୁଷଙ୍କୁ ପିଣ୍ଡ ଦାନ କରି ଆସୁଛନ୍ତି । ନାଭିଗୟାର ଐଶାନ୍ୟ କୋଣରେ ଗଦାଧର ରୂପରେ ବିରାଜିତ ସ୍ୱୟଂ ବିଷ୍ଣୁ ପିଣ୍ଡଦାତାଙ୍କର ସାକ୍ଷୀ ରୁହନ୍ତି । ନାଭିଗୟା ଶ୍ରାଦ୍ଧ ଓ ପିଣ୍ଡଦାନ ପରେ ଲୋକମାନେ ବିରଜା ଦେବୀଙ୍କର ଦର୍ଶନ କରି ନିବେଦନ କରନ୍ତି :–

ଦେବି ଦେବି ମହାଦେବୀ ତ୍ୱଂ ଦେବୀ ପିତୃରୂପିଣୀ ।  
ତ୍ୱଂ ଦେବୀ ସର୍ବଭୂତାନାଂ ଗୟାସ୍ୱାଂ ମୁକ୍ତିଦାୟିନୀ ।।

ଆଶ୍ୱିନ ମାସ ଦୁର୍ଗାପୂଜା ସମୟରେ ମହାଦେବୀ ବିରଜାଙ୍କର ଦର୍ଶନ ଅତ୍ୟନ୍ତ ପୁଣ୍ୟପ୍ରଦ । ଏହି ମାସରେ ମା' ବିରଜାଙ୍କ ଦର୍ଶନରେ ସର୍ବ ସିଦ୍ଧି ଲାଭ ହୁଏ ବୋଲି କପିଳ ସଂହିତାରେ ଉଲ୍ଲେଖ ଅଛି ଯଥା :–

ଯୋ ବ୍ରଜେତ୍ ବିରଜଂ କ୍ଷେତ୍ରଂ ମଧୁମାସେ ନରୋତ୍ତମ ।  
ଆଶ୍ୱିନେ ମାଧବେ ବାପି ସର୍ବବେଦ୍ ଧ୍ରୁବମ୍ ।।

---

ଗ୍ରାମ–ସିଦ୍ଧେଶ୍ୱର, ପଞ୍ଚାୟତ–ରାମବାଗ,  
ଜିଲ୍ଲା–ଯାଜପୁର

### ଚାଉଳ ଉତ୍ପାଦନ କ୍ଷେତ୍ରରେ
### ଓଡ଼ିଶା ଏକ ବଳକା ରାଜ୍ୟ ଭାବରେ ପରିଗଣିତ

ଚାଉଳ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ଏକ ବଳକା ରାଜ୍ୟ ଭାବରେ ପରିଗଣିତ ହୋଇପାରିଛି । ଚଳିତ ବର୍ଷ ଜୁଲାଇ ୧୫ ତାରିଖ ସୁଦ୍ଧା ଭାରତୀୟ ଖାଦ୍ୟ ନିଗମ ୭ ଲକ୍ଷ ୭ ହଜାର ମେଟ୍ରିକ୍ ଟନ୍ ଚାଉଳ ମିଲ୍‌ମାନଙ୍କଠାରୁ ସଂଗ୍ରହ କରି ସାରିଲାଣି ଏବଂ ଅକ୍ଟୋବର ମାସ ସୁଦ୍ଧା ୭ ଲକ୍ଷ ୫୦ ହଜାର ମେଟ୍ରିକ୍ ଟନ୍ ଚାଉଳ ସଂଗ୍ରହ ହେବ ବୋଲି ଅଟକଳ କରାଯାଉଛି । ସରକାରଙ୍କ ନୀତି ଅନୁଯାୟୀ ମିଲ୍‌ମାନେ ନିଜ ଗଚ୍ଛିତ ଚାଉଳ ପରିମାଣର କେବଳ ୭୫ ଭାଗ ହିଁ ଭାରତୀୟ ଖାଦ୍ୟ ନିଗମକୁ ଦେଉଥାନ୍ତି । ଆମର ସାଧାରଣ ବଣ୍ଟନ ବ୍ୟବସ୍ଥା ପାଇଁ ଚାଉଳର ଆବଶ୍ୟକତା ପ୍ରାୟ ୫ ଲକ୍ଷ ୫୦ ହଜାର ମେଟ୍ରିକ୍ ଟନ୍ ଥିବାରୁ ଭାରତୀୟ ଖାଦ୍ୟ ନିଗମ ଅନ୍ୟ ରାଜ୍ୟକୁ ଅତି କମ୍‌ରେ ୨ ଲକ୍ଷ ମେଟ୍ରିକ୍ ଟନ୍ ଚାଉଳ ପଠାଇ ପାରିବ ।

୧୯୯୩–୯୪ ବର୍ଷରେ ଯେତେବେଳେ ରେକର୍ଡ ମାତ୍ରାର ୬୬ ଲକ୍ଷ ୧୭ ହଜାର ମେଟ୍ରିକ୍ ଟନ୍ ଚାଉଳ ଉତ୍ପାଦିତ ହୋଇଥିଲା, ସେତେବେଳେ ଭାରତୀୟ ଖାଦ୍ୟ ନିଗମ କେବଳ ୩ ଲକ୍ଷ ୪୫ ହଜାର ମେଟ୍ରିକ୍ ଟନ୍ ଚାଉଳ ମିଲ୍‌ମାନଙ୍କଠାରୁ ସଂଗ୍ରହ କରିଥିଲା । ୧୯୯୭–୯୮ ବର୍ଷରେ ତାହା ୫ ଲକ୍ଷ ୪୫ ହଜାର ମେଟ୍ରିକ୍ ଟନ୍‌କୁ ବୃଦ୍ଧି ପାଇଥିଲା । ଚଳିତ ଖରିଫ୍ ଋତୁରେ ୮୦ ଲକ୍ଷ ୯୦ ହଜାର ମେଟ୍ରିକ୍ ଟନ୍ ଚାଉଳ ଉତ୍ପାଦନ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

# ନାରାୟଣୀ ନମୋସ୍ତୁତେ

ଶ୍ରୀ ଶଂକର୍ଷଣ ମଙ୍ଗରାଜ

ପ୍ରକୃତିଶକ୍ତି ତିନିଗୋଟି ରୂପରେ ଭକ୍ତମାନଙ୍କ ସମ୍ମୁଖରେ ପ୍ରତିଭାତ ହୁଅନ୍ତି । ସେ ଯେଉଁ ରୂପଧରି ସୃଷ୍ଟି ସର୍ଜନା କରିଥାନ୍ତି, ତାଙ୍କୁ କୁହାଯାଏ ବ୍ରହ୍ମା ; ଯେଉଁ ରୂପ ଧରି ପାଳନ କରନ୍ତି ସେ ବିଷ୍ଣୁ ; ରୁଦ୍ର ରୂପ ଧରି ସେ ସଂହାର କରିଥାନ୍ତି । ଈଶ୍ୱରଙ୍କର ଏହି ତିନିରୂପ ସୃଷ୍ଟି, ସ୍ଥିତି ଏବଂ ପ୍ରଳୟ ପାଇଁ ଦାୟୀ । ଈଶ୍ୱରଙ୍କର ଅନ୍ୟ ଏକ ରୂପ ହେଉଛି ଶକ୍ତି ବା ମାତୃ ରୂପ । ଏହି ରୂପଟି ଭକ୍ତ ନିକଟରେ ଅତି ଆଦରର ରୂପ । କାରଣ ପିଲା ପାଇଁ ସବୁଠାରୁ ବେଶୀ ପ୍ରିୟ ହେଉଛି ମା' । ମା' ନିକଟରେ ମନଖୋଲି ସବୁ କଥା କହିହୁଏ । ତେଣୁ ଭଗବାନଙ୍କୁ ପ୍ରାର୍ଥନା କଲାବେଳେ ସର୍ବପ୍ରଥମେ ତାଙ୍କୁ ମାତୃ ରୂପରେ ବନ୍ଦନା କରାଯାଏ ।

"ତ୍ୱମେବ ମାତା ଚ ପିତା ତ୍ୱମେବ".......କହି ପ୍ରାର୍ଥନା କରାଯାଏ । ସତ୍ତ୍ୱ, ରଜ, ତମ ଏହି ତିନିଗୁଣକୁ ଆଖି ଆଗରେ ରଖି ମାଆଙ୍କର ତିନିପ୍ରକାର ରୂପ କଳ୍ପନା କରାଯାଇଛି । କେହି କେହି ଏହି ଶକ୍ତିକୁ ଇଚ୍ଛାଶକ୍ତି, କ୍ରିୟାଶକ୍ତି ଏବଂ ଜ୍ଞାନଶକ୍ତି ରୂପରେ ଆରାଧନା କରିଥାନ୍ତି । ସର୍ବ ସାଧାରଣରେ ମହାସରସ୍ୱତୀ, ମହାଲକ୍ଷ୍ମୀ ଏବଂ ମହାକାଳୀ ବା ଦୁର୍ଗା ରୂପରେ ମା'ଙ୍କର ପୂଜା ଆରାଧନା କରାଯାଏ । ମହାସରସ୍ୱତୀ ହେଉଛନ୍ତି ଜ୍ଞାନଦାତ୍ରୀ, ବୁଦ୍ଧିଦାତ୍ରୀ ଓ ବିଦ୍ୟାଦାୟିନୀ । ମହାଲକ୍ଷ୍ମୀ ଧନ, ଜନ, ଗୋପଲକ୍ଷ୍ମୀ, ଐଶ୍ୱର୍ଯ୍ୟ ଦାୟିନୀ । ମହାକାଳୀ ସକଳ ଶକ୍ତିର ଆଧାର । ସେ କେତେବେଳେ କରାଳବଦନା ତ କେତେବେଳେ ଶାନ୍ତ, ସୌମ୍ୟକାନ୍ତି ଧାରିଣୀ । ଶକ୍ତି ଆରାଧନା ପାଇଁ ମହାକାଳୀଙ୍କୁ ପୂଜା ଆରାଧନା କରିବା ବିଧି ରହିଛି । ଦଶଶିର ରାବଣ ବିରୋଧରେ ଯୁଦ୍ଧଯାତ୍ରା କରିବା ପୂର୍ବରୁ ଶ୍ରୀରାମଚନ୍ଦ୍ର ମହାକାଳୀ ବା ମା' ଦୁର୍ଗାଙ୍କର ପୂଜାଅର୍ଚ୍ଚନା କରିଥିଲେ । ମହାଭାରତ ଯୁଦ୍ଧରେ ଧନୁର୍ଧାରଣ କରିବା ପୂର୍ବରୁ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ ଶକ୍ତି ଆରାଧନା କରିଥିଲେ । ମହିଷାସୁରଙ୍କୁ ବଧ କରିବା ପାଇଁ ଦେବତାମାନେ ମା' ଦୁର୍ଗାଙ୍କ ନିକଟରେ ପ୍ରାର୍ଥନା କରିଥିଲେ ।

ଦେବୀ ହେଉଛନ୍ତି ପରାଶକ୍ତି । ତାଙ୍କୁ ଦୁର୍ଗା, କାଳୀ, ଭବାନୀ, ଅମ୍ବିକା, ଜଗଦମ୍ବା, ଉମା, ଗୌରୀ, ଚଣ୍ଡୀ, ତାରା ନାମରେ ପୂଜା ଆରାଧନା କରାଯାଏ । ବାସ୍ତବିକ ଦେବୀ ହେଉଛନ୍ତି ପ୍ରକୃତିର ସ୍ୱରୂପ । ସମଗ୍ର ସଂସାର ତାଙ୍କର ଶରୀର । ପର୍ବତମାନେ ତାଙ୍କର ଅସ୍ଥିସ୍ୱରୂପ । ସ୍ରୋତସ୍ୱିନୀମାନେ ତାଙ୍କର ଶିରାପ୍ରଶିରା ଏବଂ ଧମନୀ ସ୍ୱରୂପ । ସମୁଦ୍ର ତାଙ୍କର ଉଦର । ଚନ୍ଦ୍ର, ସୂର୍ଯ୍ୟ ଚକ୍ଷୁ ଏବଂ ପବନ ନିଃଶ୍ୱାସପ୍ରଶ୍ୱାସ । ଅଗ୍ନି ହେଉଛି ତାଙ୍କର ମୁଖ ।

ଆମ୍ଭମାନଙ୍କର ଶରୀରର ଇଚ୍ଛା, ଅଭିଳାଷ, ଆକାଂକ୍ଷା, ଚେତନା ବୁଦ୍ଧି, ଜ୍ଞାନ ଏହି ସମସ୍ତ ଶକ୍ତି ହେଉଛି ମା'ଙ୍କର ପ୍ରତୀକ । ମୂଳାଧାର ଚକ୍ରରେ ସେ କୁଣ୍ଡଳିନୀ ଶକ୍ତି ଆକାରରେ ବିରାଜମାନ କରିଛନ୍ତି । ସେହିଠାରେ ଥାଇ ସମଗ୍ର ଜୀବନ ପ୍ରକ୍ରିୟାକୁ ସେ ନିୟନ୍ତ୍ରଣ କରୁଛନ୍ତି । ସେହିଠାରୁ ସେ ସୁଷୁମ୍ନା ନାଡ଼ି ମାଧ୍ୟମରେ ଜୀବନୀଶକ୍ତି ସଞ୍ଚାର କରୁଛନ୍ତି । ସେ ସମଗ୍ର ଜଗତର ମୂଳଶକ୍ତି । ଜୀବନର କେନ୍ଦ୍ରବିନ୍ଦୁ । ସୂର୍ଯ୍ୟ ନାରାୟଣଙ୍କର ତେଜ, ଜନମନ ହରଣକାରୀ ପ୍ରାକୃତିକ ସୁଷମା, ଇନ୍ଦ୍ରଧନୁର ବର୍ଣ୍ଣିଳ ଶୋଭା, ବେଦମାତାଙ୍କର ଗାୟତ୍ରୀ ଛନ୍ଦ, ସାଧୁସନ୍ଥଙ୍କର ବିଶ୍ୱାସଶକ୍ତି, ଭକ୍ତମାନଙ୍କର ଭକ୍ତି, ଯୋଗୀମାନଙ୍କର ସମାଧି । ସେ ବିଦ୍ୟା, ସେ ଶକ୍ତି, ସେ ଲୋଭ, ସେ କ୍ରୋଧ, ସେ ମୋହ ପୁଣି ସେ ଗର୍ବ ସେ ଅହଂକାର । ତାଙ୍କ ରୂପର କଳନା କରିବା ସାଧ୍ୟାତୀତ ।

ପରମପିତା ପରମେଶ୍ୱରଙ୍କୁ ଶିବ ଏବଂ ମାତା ପରମେଶ୍ୱରୀଙ୍କୁ ଶକ୍ତି, ଦୁର୍ଗା, କାଳୀ ରୂପରେ କଳ୍ପନା କରାଯାଇଛି । ମା' ଦୁର୍ଗା ହେଉଛନ୍ତି ପରମେଶ୍ୱରଙ୍କର ଶକ୍ତି ସ୍ୱରୂପିଣୀ । ଶିବ ନିଷ୍ପନ୍ଦ ନିଥର ଜଡ଼ସ୍ୱରୂପ । ସେ କେବଳ ସାକ୍ଷୀଭୂତ ସ୍ୱରୂପ । ସଂସାରର ପରିବର୍ତ୍ତନରେ ତାଙ୍କର କୌଣସି ପରିବର୍ତ୍ତନ ହୁଏ ନାହିଁ । ମାୟାମୟ ସଂସାର ଲୀଳାଖେଳାର ସେ ଦ୍ରଷ୍ଟାମାତ୍ର । ମା'ଦୁର୍ଗା ହେଉଛନ୍ତି ଚଳଚଞ୍ଚଳ ଶକ୍ତି ।

ପରମେଶ୍ୱରଙ୍କ ଇଚ୍ଛାରେ ଜଗତ୍ ସୃଷ୍ଟି ହୋଇଛି । ସୃଷ୍ଟିପାଇଁ ସୃଷ୍ଟିଶକ୍ତି, ପାଳନ ପାଇଁ ସ୍ଥିତିଶକ୍ତି ଏବଂ ପ୍ରଳୟପାଇଁ ସଂହାରଶକ୍ତି ସଂସାରରେ ଲୀଳା କରନ୍ତି । ମା'ଦୁର୍ଗା ସର୍ବଶକ୍ତିମାନ୍ ପରମପିତା ପରମେଶ୍ୱରଙ୍କ ଶକ୍ତି । ସମଗ୍ର ସଂସାରରେ ସେ ହେଉଛନ୍ତି ଦୈବୀଶକ୍ତି । ଦୈବୀଶକ୍ତି ଓ ଜଡ଼ଶକ୍ତି ଏକ ଏବଂ ଅଭିନ୍ନ । ପ୍ରଶ୍ନୋପନିଷଦରେ କୁହାଯାଇଛି, "ଜଡ଼ ଏବଂ ଶକ୍ତି ମିଳିତ ହେଲେ ଜଗତ୍ ସୃଷ୍ଟି ହୁଏ । ପରମେଶ୍ୱରଙ୍କ ନିରାକାର, ନିର୍ଗୁଣ ସ୍ୱରୂପ ହେଉଛି ଶକ୍ତି ଏବଂ ସାକାର ସ୍ୱରୂପ ଜଡ଼ ବା ବିଗ୍ରହ । ପରମେଶ୍ୱରଙ୍କର ସୃଷ୍ଟିର ରହସ୍ୟକୁ ଭେଦ କରି ନପାରି କେହି କେହି ବିଜ୍ଞାନଗୋଷ୍ଠୀ କହିଥାନ୍ତି–"ଜଡ଼ ଦେହରୁ ସୃଷ୍ଟ ବିଦ୍ୟୁତ୍ ଶକ୍ତି ହିଁ ସଂସାର ସୃଷ୍ଟିର ନିୟନ୍ତା । ମାତ୍ର ସୃଷ୍ଟିର ମୂଳକାରଣ ଜଡ଼ଶକ୍ତି କିମ୍ବା ବିଦ୍ୟୁତ୍‌ଶକ୍ତି ନୁହେଁ, ଚୈତନ୍ୟଶକ୍ତି । ଏହି ଚୈତନ୍ୟଶକ୍ତି ବା ଚେତନାକୁ ବ୍ରହ୍ମଶକ୍ତି କହିଲେ ଠିକ୍ ହେବ ।

ସଂସାର କ୍ଷେତ୍ରରେ ପିଲାର ସମସ୍ତ ଅଭାବ ଅସୁବିଧା ଜନନୀ ପୂରଣ କରିଥାନ୍ତି । ପିଲାର ଜନ୍ମ, ଲାଳନପାଳନ, ବୃଦ୍ଧି, ସମୃଦ୍ଧି ସବୁଥିପାଇଁ ସେ ଦୃଷ୍ଟି ରଖିଥାନ୍ତି । ଠିକ୍ ସେହିପରି ଜଗତର ସୃଷ୍ଟି, ସ୍ଥିତି, ସମୃଦ୍ଧି, ପ୍ରଗତି ପାଇଁ ଶକ୍ତି ଯୋଗାଇଥାନ୍ତି ବିଶ୍ୱଜନନୀ ।

## ଦୁର୍ଗାପୂଜା ପରମ୍ପରା :–

ଭାରତବର୍ଷରେ ଦୁଇ ପ୍ରକାର ଦୁର୍ଗାପୂଜା ପରମ୍ପରା ପ୍ରଚଳିତ । ଗୋଟିଏ ହେଲା ଶାରଦୀୟ ଦୁର୍ଗାପୂଜା ଏବଂ ଅନ୍ୟଟି ବାସନ୍ତୀକ ଦୁର୍ଗାପୂଜା । ବସନ୍ତକାଳ ହେଉଛି ଦୁର୍ଗାପୂଜା ପାଇଁ ପ୍ରକୃଷ୍ଟ ସମୟ । ତେଣୁ ବସନ୍ତ ଋତୁରେ ମା'ଙ୍କର ନବରାତ୍ରି ପୂଜା ଅନୁଷ୍ଠିତ ହୋଇଥାଏ । ଆଶ୍ୱିନମାସ ଶୁକ୍ଳ ପକ୍ଷରେ ଶାରଦୀୟ ଦୁର୍ଗାପୂଜା ହୁଏ । ପୂର୍ବେ ଏହି ପରମ୍ପରା ପ୍ରଚଳିତ ନଥିଲା । କାରଣ ଆଷାଢ଼ମାସ ହରିଶୟନ ଏକାଦଶୀଠାରୁ ଆରମ୍ଭ କରି କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦେବୋତ୍‌ଥାନ ଏକାଦଶୀ ମଧ୍ୟରେ କୌଣସି ଦେବଦେବୀଙ୍କର ଆବାହନ କରିବା ବିଧି ନୁହେଁ । ମାତ୍ର ତ୍ରେତୟା ଯୁଗରେ ରାବଣଙ୍କୁ ବଧ କରିବା ପାଇଁ ଭଗବାନ ଶ୍ରୀରାମଚନ୍ଦ୍ର ଶକ୍ତି ଆରାଧନା କରିଥିଲେ । ମା' ଦୁର୍ଗାଙ୍କର ଶୟନକାଳରେ ଅକାଳରେ ପୂଜା ଆରାଧନା କରାଯାଉଥିବାରୁ ଏହାକୁ "ଅକାଳବୋଧନ" କୁହାଯାଏ । ଶତଦଳବାସିନୀ ମା'ଦୁର୍ଗା ଶ୍ରୀରାମଙ୍କୁ ପରୀକ୍ଷା କରିବାପାଇଁ ଗୋଟିଏ ଶତଦଳ ଲୁଚାଇ ଦେଇଥିଲେ । ଶ୍ରୀରାମଚନ୍ଦ୍ର ଆପଣାର ବାମଚକ୍ଷୁ ଉତ୍‌ପାଟନ କରି ତାଙ୍କ ପଦ୍ମଲୋଚନ ନାମ ସାର୍ଥକ କରିବାକୁ ବାହାରିବାବେଳେ ମା' ଦୁର୍ଗା ଆବିର୍ଭୂତା ହୋଇ ତାଙ୍କୁ ସେ କାର୍ଯ୍ୟରୁ ନିବୃତ୍ତ ହେବାପାଇଁ କହିଲେ ଏବଂ ଅତି ସନ୍ତୁଷ୍ଟ ଚିତ୍ତରେ ବରମାଗିବା ପାଇଁ ନିର୍ଦ୍ଦେଶ ଦେଲେ । ତାଙ୍କରି କୃପାରୁ ଦଶଶିର ରାବଣଙ୍କୁ ବଧ କରିବା ପାଇଁ ଶ୍ରୀରାମଚନ୍ଦ୍ର ସମର୍ଥ ହୋଇଥିଲେ ବୋଲି ବର୍ଣ୍ଣନା କରାଯାଇଛି । ସେହିକାଳରୁ ଶାରଦୀୟ ଦୁର୍ଗାପୂଜା ପ୍ରଚଳିତ ହୋଇ ଆସୁଛି ଏବଂ ଏହି ଦୁର୍ଗା ପୂଜାର ମହତ୍ତ୍ୱ ଜନସମାଜରେ ଅଧିକ ପରିମାଣରେ ଅନୁଭୂତ ହେଉଛି ।

## ଓଡ଼ିଶାରେ ଦଶହରା :–

ଦୁର୍ଗାପୂଜାକୁ ଓଡ଼ିଶାରେ ଦଶହରା ବୋଲି କୁହାଯାଏ । ଏହି ଉତ୍ସବ ନବରାତ୍ରି ପୂଜା ନାମରେ ଖ୍ୟାତ । ମହାଳୟାଠାରୁ ଆରମ୍ଭକରି ଆଶ୍ୱିନ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ମା'ଙ୍କର ପୂଜାର୍ଚ୍ଚନା କରାଯାଇଥାଏ । ସୁପ୍ରସିଦ୍ଧ ଶକ୍ତପୀଠ ଯାଜନଗ୍ର ବା ନାଭିଗୟାଠାରେ ମହାଳୟା ତିଥିରେ ମା' ବିରଜାଙ୍କର ରଥଯାତ୍ରା ଅନୁଷ୍ଠିତ ହୁଏ । ତା'ଛଡ଼ା ଶ୍ରୀକ୍ଷେତ୍ରର ବିମଳା, ଭୁବନେଶ୍ୱରର ଗୌରୀ, ବାଣପୁରର ଭଗବତୀ, ବାଙ୍କିର ଚର୍ଚ୍ଚିକା, କାକଟପୁରର ମଙ୍ଗଳା, ଝଙ୍କଡ଼ର ଶାରଳା, ଟିକରପଡ଼ାର ଭଟ୍ଟାରିକା, ଭଦ୍ରକର ଭଦ୍ରକାଳୀ, ଢେଙ୍କାନାଳର କିଚ୍ଛକା, ସମ୍ବଲପୁରର ସମଲେଶ୍ୱରୀ, ଭବାନୀପାଟଣାର ମାଣିକେଶ୍ୱରୀ, ଜୟପୁରର ଜଗତ୍‌ଜନନୀ, ଲକ୍ଷ୍ମୀପୁରର ଉଗ୍ରତାରା, କୋଣାର୍କର ରାମଚଣ୍ଡୀ, ବ୍ରହ୍ମଗିରିର ବାଲିହରଚଣ୍ଡୀ, ପୁରୀର ଶ୍ୟାମାକାଳୀ, ଦକ୍ଷିଣକାଳୀ ଓ ବାଟମଙ୍ଗଳା, ଭଞ୍ଜନଗରର ବ୍ୟାଘ୍ରେଶ୍ୱରୀ, କୁହୁଡ଼ିର ବ୍ୟାଘ୍ରମଙ୍ଗଳା, ଚରାପିର ମହାମାଳା, ଗଞ୍ଜାମର ତାରାତାରେଣୀ, କେନ୍ଦୁଝରର ତାରିଣୀ ପୀଠରେ ଯଥାବିଧି ପୂଜା ଅର୍ଚ୍ଚନା କରାଯାଏ । ଅନ୍ୟତମ ପ୍ରସିଦ୍ଧ ଦେବୀପୀଠ କଟକ ନଗରର କଟକଚଣ୍ଡୀ, ଗଡ଼ଚଣ୍ଡୀ, କାଳୀ, ମଙ୍ଗଳା ଏବଂ ଶ୍ମଶାନକାଳୀ ପୀଠରେ ମହାସମାରୋହରେ ମା'ଙ୍କର ପୂଜାଆରାଧନା କରାଯାଏ । ପ୍ରାଚୀନ ଉଡ୍ଡୀୟାନ ଅଞ୍ଚଳ ଏକ ଶାକ୍ତ ପୀଠଥିଲା । ତତ୍‌କାଳୀନ ଶାକ୍ତ ନରପତିମାନେ ବିଭିନ୍ନ ସ୍ଥାନରେ ଦେବୀ ମନ୍ଦିରମାନ ନିର୍ମାଣ କରାଇ ଶକ୍ତି ଆରାଧନା କରିବାପାଇଁ ପ୍ରଜାମାନଙ୍କୁ ପ୍ରୋତ୍ସାହନ ଦେଉଥିଲେ । ଏପରିକି ଯାଜପୁର ଅଞ୍ଚଳର ଘରେ ଘରେ ଦେବୀ ଆରାଧନା କରାଗଲା । ଗୃହର ଦେବୀପୀଠକୁ ଏବେ 'ଦେଇପିଣ୍ଡି' ନାମରେ ଅପଭ୍ରଂଶ କରି କୁହାଯାଉଛି । ନିତିପ୍ରତି ଦେବୀଙ୍କୁ ପୂଜା ଅର୍ଚ୍ଚନା କରାଯାଉଛି । ଘରୁ ଝିଅଟିଏ ବିଭାହୋଇ ଶାଶୁଘରକୁ ଯିବାବେଳେ ଦେଇପିଣ୍ଡିରେ ମୁଣ୍ଡିଆମାରି ବିଦାୟ ନେଇଥାଏ । ନୂଆହୋଇ ବୋହୂଟିଏ ଘରକୁ ଆସିଲେ ସର୍ବପ୍ରଥମେ ଦେଇପିଣ୍ଡିରେ ପୂଜା ଆରାଧନା କରେ । ଦେଇପିଣ୍ଡି ବା ମା'ଦୁର୍ଗା ଘରର ଓ କୁଳର ଇଷ୍ଟଦେବତା । ସବୁ ମଙ୍ଗଳ କାର୍ଯ୍ୟରେ ତାଙ୍କୁ ସର୍ବପ୍ରଥମେ ଆବାହନ, ପୂଜାର୍ଚ୍ଚନା କରାଯାଏ ।

## କାଠି ଦିଅଁ ପୂଜା :–

ପ୍ରାଚୀନ ଉତ୍କଳର ସାମରିକ ପରମ୍ପରା ବହନ କରିଥିବା ଖୋର୍ଦ୍ଧା ଅଞ୍ଚଳରେ ଗଜପତି ମହାରାଜାଙ୍କର ସୈନ୍ୟ, ସାମନ୍ତ, ପାତ୍ର, ମନ୍ତ୍ରୀ ଆଦି ଅବସ୍ଥାନ କରୁଥିଲେ । ସେମାନେ ସାଧାରଣତଃ ଦୁଇଗୋଟି ପାହାଡ଼ ମଧ୍ୟବର୍ତ୍ତୀ ସ୍ଥାନରେ ଗଡ଼ନିର୍ମାଣ କରି ରହୁଥିଲେ । ଏହି ଗଡ଼ଗୁଡ଼ିକ ଶତ୍ରୁମାନଙ୍କ ପକ୍ଷେ ଦୁର୍ଭେଦ୍ୟ ଥିଲା । ଗଡ଼ରେ ବହୁ ସଂଖ୍ୟାରେ ପାଇକସେନା ରଣକୌଶଳ ସମ୍ପର୍କରେ ତାଲିମ୍ ପାଉଥିଲେ । ସେଥିପାଇଁ ସ୍ୱତନ୍ତ୍ରଭାବେ ପାଇକଆଖଡ଼ା ଘରମାନ ନିର୍ମିତ ହୋଇଥିଲା । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମର୍ଥ ଯୁବକମାନେ ପାଇକରୂପେ ତାଲିମ୍ ପାଉଥିଲେ ଏବଂ ଆବଶ୍ୟକବେଳେ ଗଜପତିଙ୍କ ସହ ଯୁଦ୍ଧ କ୍ଷେତ୍ରକୁ ଯାଇ ଉତ୍କଳର ବିଜୟ ବୈଜୟନ୍ତୀକୁ ଗୌରବାନ୍ୱିତ କରି ରଖି ପାରୁଥିଲେ । ଖୋର୍ଦ୍ଧା ନିକଟବର୍ତ୍ତୀ ମାଣିକ ଗୋଡ଼ା ଗ୍ରାମରେ ଏବେ ମଧ୍ୟ ହିନ୍ଦୁ, ମୁସଲମାନ ଓ ଆଦିବାସୀମାନେ ମିଳିତ ଭାବେ ଦଶହରା ଉତ୍ସବ ପାଳନ କରୁଛନ୍ତି । ପାଇକ ଆଖଡ଼ା ତାଲିମ୍ ପାଇଁ ଗୁରୁଜଙ୍ଗଠାରେ ଗୋଟିଏ ତାଲିମ୍‌କେନ୍ଦ୍ର ଖୋଲାଯାଇଛି । ପ୍ରତ୍ୟେକ ଗଡ଼ରେ ସେବକାଳରେ ଜଣେ ଜଣେ ଦଳପତି ରହୁଥିଲେ । ତାଙ୍କୁ କୁହାଯାଉଥିଲା ଦଳବେହେରା । ଏହି ଦଳବେହେରାଙ୍କର ସଚିବ ଥିଲେ ଦଳେଇ । ଏହିମାନଙ୍କ ତତ୍ତ୍ୱାବଧାନରେ ପାଇକ ସେନାନୀ ପରିଚାଳିତ ହେଉଥିଲେ ।

ସାମରିକ ପରମ୍ପରାର ପ୍ରତୀକ ସ୍ୱରୂପ ଦଳବେହେରାଙ୍କ ନିର୍ଦ୍ଦେଶରେ ପାଇକ ଓ ପୂଜକମାନେ ଯାଇ ମା' ଦୁର୍ଗାଙ୍କ

ପ୍ରଜାମାନଙ୍କ ବା ଧଣ୍ଡା ଆଣନ୍ତି । ଏହି ଧଣ୍ଡାକୁ ଗୋଟିଏ ଖୁଣ୍ଟରେ ବାନ୍ଧି ସେହି ଖୁଣ୍ଟକୁ କାଠିଦିଅ ଆକାରରେ ସଜ୍ଜିତ କରାଯାଏ । ନାନାପ୍ରକାର ପାଟବ ଲୁଗାରେ ଖୁଣ୍ଟଟିକୁ ଦେବୀ ଆକାର ଦିଆଯାଏ । ଦଶହରାଦିନ ରାତ୍ରିକାଳରେ ଦଳବେହେରା ସୈନ୍ୟ ସାମନ୍ତ ସଙ୍ଗରେ ଦଶହରା ପଡ଼ିଆକୁ ଯୁଦ୍ଧ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ସେତେବେଳେ ତାଙ୍କ ସହିତ ମାନସିଂହ, ମର୍ଦ୍ଦରାଜ, ପରଗଣାଜ, ସାମନ୍ତରାୟ, ରାଉତରାୟ, ପାଇକରାୟ, ବହଟରାୟ, ଜଗଦ୍ଦିରାୟ, ବୈରୀଗଞ୍ଜନ, ରଣମାଣ୍ଡିନ, ରଣସିଂହ, ପାଟଶାଣୀ, ହରିଚନ୍ଦନ, ଶ୍ରୀଚନ୍ଦନ, ଦକ୍ଷିଣ କବାଟ, ଉତ୍ତର କବାଟ, ଛୁଆଳସିଂହ, ହେମାସିଂହ, କହଳସିଂହ, ଗାଟସିଂହ, ବାଘସିଂହ, ରାୟ, ଛୋଟରାୟ ଆଦି ସୈନ୍ୟ ସାମନ୍ତ ଦେବୀପୀଠରେ ସଜ ବସିଥିବା ଢାଲ, ତଲୁଆର, କରବାଳ, ଛୁରୀ, କଟାରୀ ଆଦି ଅ ଶ ଧରି ଥାଆନ୍ତି । ବୀରବାଜା ବାଜୁଥାଏ । ଆଗେ ଆଗେ ମା'ଦୁର୍ଗାଙ୍କର ପ୍ରତୀକ କାଠିଦିଅଙ୍କୁ ବାଦ୍ୟର ତାଳେ ତାଳେ ନଗର ନଗର ପାଇକମାନେ ନେଉଥାନ୍ତି । ପଛେପଛେ ଚାଲିଥାନ୍ତି ପାଇକ କୁହାଟ ଦେଇ ଉତ୍କଳର ସାମରିକ ବାହିନୀ । ଚପ୍‌କନ୍ ପାଇଜାମା, ଖୁଡ଼କୀ ପାଗ, ଶିରପା ପିନ୍ଧି ଦଳବେହେରା ରାଜକୀୟ ବେଶରେ ପାଲିଙ୍କି ବା ଅଶ୍ୱ ପୃଷ୍ଠରେ ବସି ଯାତ୍ରା କରୁଥାନ୍ତି ହାତରେ ତାଙ୍କର ଧନୁତୀର ଥାଏ । ଦଶହରା ପଡ଼ିଆ ବା ଯୁଦ୍ଧ ପଡ଼ିଆରେ ମା' ଦୁର୍ଗାଙ୍କୁ ପ୍ରଣତି ଜଣାଇ ସେ ଗୋଟିଏ ଦିଗକୁ ତୀର ନିକ୍ଷେପ କରନ୍ତି । ପାଇକ କୁହାଟରେ ଗଗନ ପବନ ପ୍ରକମ୍ପିତ ହୋଇ ଉଠେ । ମା' ଶକ୍ତି ପ୍ରତ୍ୟେକ ପ୍ରାଣରେ ନୂତନଶକ୍ତି ସଞ୍ଚାର କଲାପରି ପ୍ରତୀୟମାନ ହୁଏ ।

ଦେବୀ ବା ଶକ୍ତି ହେଉଛନ୍ତି - ସବୁକିଛି । ସେ ଭାବିଲେ ମାରିପାରନ୍ତି, ତାରିପାରନ୍ତି, ସେ ଗଢ଼ିପାରନ୍ତି, ଭାଙ୍ଗିଦେଇ ପାରନ୍ତି । ଏ ସଂସାରରେ ମାଆଙ୍କ ବ୍ୟତୀତ ଆଉ କିଛି ନାହିଁ । ପରମେଶ୍ୱରଙ୍କ ଇଚ୍ଛାରେ ଅବିଦ୍ୟାମାୟା ରୂପରେ ସେ ପ୍ରତିଭାତ ହୋଇଛନ୍ତି । ତାଙ୍କରି ପାଦପଦ୍ମରେ କାତରକଣ୍ଠରେ ଧ୍ୟାନ ଲଗାଇଲେ ସେ ସନ୍ତୁଷ୍ଟ ହୁଅନ୍ତି । ସନ୍ତାନର ଶ୍ରୀବୃଦ୍ଧି ପାଇଁ ସେ ବିଦ୍ୟାମାୟା ରୂପେ ପ୍ରତିଭାତ ହୁଅନ୍ତି । ସେତେବେଳେ ସାଧକର ହୃଦୟ ଆକାଶରୁ ମାୟାପଟଳ ଅପସରିଥାଏ । ମାଆଙ୍କର ଭୁବନମୋହିନୀ ଛବି ଚିତ୍ତାକାଶକୁ ଝଲସାଇ ଉଦ୍‌ଭାସିତ ହୋଇ ଉଠେ । ପବିତ୍ର ଶାରଦୀୟ ପୂଜା ଅବସରରେ ସଂସାରର ସମସ୍ତ ଦୁର୍ଗତି ନାଶ କର ମା'ଦୁର୍ଗା ! କାଳର କରାଳ କବଳରୁ ଜନପ୍ରାଣୀଙ୍କୁ ରକ୍ଷା କର ମା'କାଳୀ । ଏତିକି ମାତ୍ର ତୁମ ପାଦପଦ୍ମରେ ବିନତି ।

"ସର୍ବ ମଙ୍ଗଳ ମାଙ୍ଗଲ୍ୟେ
ଶିବେ ସର୍ବାର୍ଥ ସାଧିକେ,
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ
ନାରାୟଣୀ ନମୋସ୍ତୁତେ ॥
ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ,
ସର୍ବସ୍ୟାର୍ତ୍ତି ହରେ ଦେବୀ ! ନାରାୟଣୀ ନମୋସ୍ତୁତେ !"

ଆକାଶବାଣୀ, କଟକ

## ଶିଶୁ କଲ୍ୟାଣ କାର୍ଯ୍ୟକ୍ରମ ଜରିଆରେ ୬,୨୦୩ ଜଣ ହିତାଧିକାରୀ ଉପକୃତ

୧୯୯୭-୯୮ ଆର୍ଥିକ ବର୍ଷରେ ରାଜ୍ୟ ସରକାର ଶିଶୁ କଲ୍ୟାଣ କାର୍ଯ୍ୟକ୍ରମ ଜରିଆରେ ୮୬ କୋଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାଧ୍ୟମରେ ୬,୨୦୩ ଜଣ ଶିଶୁଙ୍କ ଥଇଥାନ ବ୍ୟବସ୍ଥା କରିଛନ୍ତି ।

ବିଭାଗ ସୂତ୍ରରୁ ପ୍ରକାଶ ଯେ, ଅନାଥମାନଙ୍କୁ ଥଇଥାନ କରି ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ବୈଷୟିକ ଶିକ୍ଷା ପ୍ରଦାନ ନିମନ୍ତେ ୮୬ କୋଟି ବେସରକାରୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶିଶୁଗୃହ ପ୍ରତିଷ୍ଠା କରିଛନ୍ତି । ଏହି ବେସରକାରୀ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ସରକାରଙ୍କ ଦ୍ୱାରା ସ୍ୱୀକୃତିପ୍ରାପ୍ତ ଅଟନ୍ତି । ଶିଶୁଗୃହଗୁଡ଼ିକର ପ୍ରତ୍ୟେକ ପିଲାର ଖାଦ୍ୟପେୟ ଓ ଶିକ୍ଷାଜନିତ ଖର୍ଚ୍ଚ ପାଇଁ ସରକାର ୯୦ ପ୍ରତିଶତ ଅନୁଦାନ ମଞ୍ଜୁର କରୁଥିବାବେଳେ ଅବଶିଷ୍ଟ ୧୦ ପ୍ରତିଶତ ସମ୍ପୃକ୍ତ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବହନ କରିଥାନ୍ତି ।

୧୯୯୭-୯୮ ଆର୍ଥିକ ବର୍ଷରେ ଖାଦ୍ୟପେୟ ବାବଦ ଖର୍ଚ୍ଚ ପାଇଁ ମାସିକ ୨୨୫ ଟଙ୍କାରୁ ୩୦୦ ଟଙ୍କାକୁ ବୃଦ୍ଧି କରାଯାଇଛି ଓ ୨୦୦ ଜଣ ଅଧିକ ପିଲାଙ୍କୁ ଅନ୍ତର୍ଭୁକ୍ତି କରାଯାଇ ସର୍ବମୋଟ ୬,୨୦୩ ଜଣ ଶିଶୁଙ୍କ ଲାଳନ ପାଳନ ଦାୟିତ୍ୱ ସରକାର ବହନ କରିଛନ୍ତି ।

# ମା' ତୁ ଫେରିଯା

ଶ୍ରୀ କୈଳାସ ତ୍ରିପାଠୀ

ଏଇଠି ତ ପବନରେ ବିଷ
ଗଗନରେ ମୃତ୍ୟୁର ହୁଙ୍କାର
ନାହିଁ ଏଠି ଆତଙ୍କର ଶେଷ
ସ୍ପନ୍ଦନରେ କରୁଣ ଝଙ୍କାର ।

ଏଇଠି ତ ହୃଦୟରେ ଧ୍ୱନି
ଆର୍ଯ୍ୟାବର୍ତ୍ତେ ବାଡ଼ବାଗ୍ନି ଜଳେ
ପଲକରେ କାକୁସ୍ଥ କାହାଣୀ
ମଣିଷ ଓ ପିଶାଚର ମେଳେ ।

ଲାଲ୍ ଏଠି ମାଟି ମରୁବାଲି
ଲାଲ୍ ଏଠି ଭୂସ୍ୱର୍ଗ ଭୂଗୋଳ
ଲାଲ୍ ଏଠି ସବୁ ଆଜିକାଲି
ଲାଲ୍ ଏଠି ସମୁଦ୍ରର ଜଳ ।

ବର୍ଷିବର୍ଷି ବୁଲେଟ୍ ବାରୁଦ
ଘରେ ଘରେ ତୂରମାର ତୁଡ଼ି
ଅହର୍ନିଶି ରାମ ନାମ ସତ୍ୟ
ଓଠ ଯାଏ ଅଶ୍ରୁକୁ ଶୋଷଡ଼ି ।

ଏଠି ଖାଲି ରକ୍ତ ଛୁରୀ ଖେଳ
ଛିନ୍ନଭିନ୍ନ ଅସ୍ଥି ମେଦ ମାଂସ
ରାସ୍ତାଘାଟେ କବନ୍ଧର ଦଳ
ଯହିଁ ଦେଖ ଧ୍ୱଂସ ଆଉ ଧ୍ୱଂସ ।
ଖୁବ୍ ତେଜ ସଂତ୍ରାସର ଶକ୍ତି
ବିଭତ୍ସତା ରଚଇ ତାଣ୍ଡବ
ବିଭୀଷିକା ପାଏ ପୂଜା ଭକ୍ତି
ଦେଶ ନୁହେଁ ଏଇ ଯେ ଖାଣ୍ଡବ ।

ଇମିତିରେ ତୁହି ଆସୁ ସତେ
ଜଗଧାତ୍ରୀ କାହିଁକି କେଜାଣି
ନାହିଁ ତୋର ନିସ୍ତାର ଗୋ' ମାତେ
ଫେରିଯା ଗୋ' ଫେରିଯା ଉଜାଣି ।

ଫୁଟିଯିବ ବୋମାର ବାରୁଦ
ପରିତ୍ରାଣ ମିଳିବନି ମାଆ
ଅଷ୍ଟଭୁଜେ ଅଶକ୍ତ ଆୟୁଧ
ହେବ ନାହିଁ ହେବ ନାହିଁ ସାହା ।

ଯେତେ ଭକ୍ତ ଯେତେ ବା ସ୍ତାବକ
ଆମେ ଅଛୁ ନିର୍ବୀର୍ଯ୍ୟ ଦୁର୍ବଳ
ଯେତେ ତୋର ସେବକ ପୂଜକ
ଭୟ– ଭୟ– ଭୟରେ ପାଗଳ ।

ବିସ୍ୱାଦରେ କିଏ ହେବ ଠିଆ
କିଏ ଦେବ ଛାତିକୁ ପତାଇ
ମାଗୁଣି ମୋ' ମା' ତୁ ଫେରିଯା
ପାର୍ବଣରେ ମନ ଦେ' ନାହିଁ ।

'କଳ୍ପନାଲୋକ',
୩/୨, ୪ ବି, ୟୁନିଟ–୩,
ଭୁବନେଶ୍ୱର

# ଆଦିବାସୀ ଚିନ୍ତା ଚେତନାରେ ଶାକ୍ତ ଭାବନା

ଶ୍ରୀ ଦାମୋଦର ସାହୁ

ସୃଷ୍ଟିର ପ୍ରାରମ୍ଭରୁ ମଣିଷ ଶକ୍ତିର ଉପଲବ୍ଧି କରି ଆସିଛି । ଶକ୍ତି ଉପାସନା ମାଧ୍ୟମରେ ବହୁ ଅସାଧ୍ୟ କଷ୍ଟସାଧ୍ୟ ପ୍ରୟାସକୁ ଆୟତ୍ତାଧୀନ କରିବାର ସୂକ୍ଷ୍ମ ଚିନ୍ତାଧାରା ସେ ବହୁ ପ୍ରାଚୀନକାଳରୁ ଚେଷ୍ଟା କରି ଆସିଛି । ଐତିହାସିକ ଓ ନୃତତ୍ତ୍ୱବିତ୍‌ମାନେ ଆଦିମ ଯୁଗରେ ଏହି ଚିନ୍ତାଧାରାକୁ ବହୁ ଅନୁସନ୍ଧାନ ପରେ ରୂପାୟିତ କରିଛନ୍ତି । ମହେଞ୍ଜୋଦାରୋ ଓ ହରପ୍ପା ସଭ୍ୟତାର ଖନନ ଫଳରେ ଜଣାପଡ଼ିଛି ଯେ ବହୁ ଅତୀତରେ ଶାକ୍ତ ଓ ଶୈବ ଚିନ୍ତାଧାରାର ଏକ ମୌଳିକ ସମିଶ୍ରଣ ହୋଇଥିଲା । ମହେଞ୍ଜୋଦାରୋ ଓ ହରପ୍ପାର ଖନନରୁ ପ୍ରାପ୍ତ ମୋହରରୁ ଐତିହାସିକମାନେ ଶିବସତ୍ତା ଓ ମାତୃଶକ୍ତିର ସ୍ଫୁଲିଙ୍ଗ ନିରୂପଣ କରିସାରିଛନ୍ତି । ସେତେବେଳେ ସେମାନେ ଦୁଷ୍ଟ ଅହିତକାରି ଦୁଷ୍ଟ ପିଶାଚମାନଙ୍କଠାରୁ ରକ୍ଷା ପାଇବା ପାଇଁ ମାତୃଶକ୍ତିର ସାହାଯ୍ୟ ନେଉଥିଲେ। ପିପ୍ପଳର ଚିତ୍ରରୁ ଅନୁମାନ କରାଯାଏ ସେତେବେଳେ ସମାଜରେ ବୃକ୍ଷ ପୂଜା ବିଶେଷ ଭାବରେ ପ୍ରଚଳିତ ଥିଲା । ପରବର୍ତ୍ତୀକାଳରେ ଆର୍ଯ୍ୟମାନେ ଭାରତ ଭୂମିରେ ପ୍ରବେଶ କରି ସେମାନଙ୍କୁ ଦସ୍ୟୁ ବୋଲି ସ୍ୱୀକାର କରିଥିଲେ ହେଁ ସେମାନଙ୍କ ପ୍ରଚଳିତ ଧର୍ମଚେତନାକୁ ପରୋକ୍ଷ ଭାବରେ ସମ୍ମାନ ପ୍ରଦର୍ଶନ କରିଥିଲେ । ଆର୍ଯ୍ୟମାନେ ପ୍ରକୃତି ଉପାସକ ଥିବାରୁ ସେମାନେ ଆକାଶ, ଧରିତ୍ରୀ, ସୂର୍ଯ୍ୟ, ଚନ୍ଦ୍ର, ବୃକ୍ଷ, ଜଳ, ବାୟୁ ଇତ୍ୟାଦି ପ୍ରାକୃତିକ ପଦାର୍ଥର ଭୂରି ଭୂରି ବର୍ଣ୍ଣନା ବେଦରେ ସ୍ଥାନ ଦେଇଥାନ୍ତି । ମୋଟ ଉପରେ କହିବାକୁ ଗଲେ ବହୁ ପ୍ରାଚୀନକାଳରୁ ଶକ୍ତି ଉପାସନା ଆମ ସମାଜରେ ପ୍ରଚଳିତ ଥିଲା । ହୁଏତ କିଏ କେତେବେଳେ ସେହି ଶକ୍ତିକୁ ଦେବୀ ବିଗ୍ରହ ମାଧ୍ୟମରେ, କିଏ ପ୍ରକୃତିରେ ବୃକ୍ଷ, ପଶୁ, ପକ୍ଷୀଭାବରେ ବା ଆଉ କିଏ ଅଦୃଶ୍ୟ ଭାବ ସତ୍ତା ମଧ୍ୟରେ ଆବଦ୍ଧ କରି ତାଙ୍କୁ ମାତୃଶକ୍ତି ଭାବରେ ପୂଜା କରୁଥିଲା । ଅତୀତରେ ଯେଉଁ ବୃକ୍ଷ ପୂଜା ଆମ .ସମାଜରେ ପ୍ରଚଳିତ ଥିଲା, ତାହା ପରବର୍ତ୍ତୀକାଳରେ ଦାରୁବିଗ୍ରହର ଉପାସନାରେ ରୂପାୟିତ ହେଲା । ମା ଆଦ୍ୟାଶକ୍ତି ଦୁର୍ଗାଙ୍କୁ ପୂଜା କରିବା ପୂର୍ବରୁ ତାଙ୍କୁ "ବେଲବରଣୀ" ବା ବିଲ୍ୱବୃକ୍ଷରୁ ବରଣ କରିବାର ପ୍ରଥା ଭାରତୀୟ ହିନ୍ଦୁ ଦର୍ଶନରେ ଚାଲି ଆସୁଛି । ପ୍ରାଚୀନ ବୃକ୍ଷପୂଜା ପଦ୍ଧତିକୁ ସମ୍ମାନ ପ୍ରଦର୍ଶନ କରି ଶାରଦୀୟ ଦୁର୍ଗାପୂଜା ଅବସରରେ ନ'ଅ ଗୋଟି ବୃକ୍ଷର ପତ୍ରକୁ ପୂଜା ସାମଗ୍ରୀ ଭାବେ ମା'ଆଙ୍କୁ ଅର୍ପଣ କରାଯାଏ–

"ରମ୍ଭା କଚ୍ଚି ହରିଦ୍ରା ଚ ଜୟନ୍ତି ବିଲ୍ୱ ଦାଡ଼ିମୌ,
ଅଶୋକ ମାନକ ଶ୍ଚୈବ ଧାନ୍ୟଶ୍ଚ ନବ ପତ୍ରିକା"

ଦେଖୁ ବହୁ ପ୍ରାଚୀନକାଳରୁ ଆମ ସମାଜରେ ମାତୃ ପୂଜାର ପ୍ରତୀକ ଭାବେ ଶକ୍ତି ପୂଜା ଚାଲି ଆସୁଛି । ଏହି ଶକ୍ତି ପୂଜାର ପ୍ରଥମ ପୂଜକ ଭାବେ ଆମର ପୂର୍ବପୁରୁଷ ଆଦିବାସୀମାନେ ପରିଗଣିତ ହୋଇଥାନ୍ତି । ଏବେବି ଏହାର ପରମ୍ପରା ଆମ୍ଭେ ଆଦିବାସୀ ସମାଜରେ ଉପଲବ୍ଧି କରୁ ।

ଶିବ ଓ ଶକ୍ତି ଭାରତୀୟ ପ୍ରାଚୀନ୍ନ ପରମ୍ପରାର ଦୁଇଟି ଧାର୍ମିକ ଚିନ୍ତାଧାରା ଏବଂ ସେହି ଦୁଇ ଧାର୍ମିକ ଚିନ୍ତାଧାରାକୁ ନେଇ ଭାରତବର୍ଷରେ ପ୍ରବେଶ କରିଛି ଶୈବ ଓ ଶାକ୍ତ ମତବାଦ । ଏହି ଶୈବ ଓ ଶାକ୍ତ ମତବାଦରୁ ପରବର୍ତ୍ତୀ ସମୟରେ ଆଉ ଏକ ନୂତନ ଚିନ୍ତାଧାରା ପ୍ରବାହିତ ହୋଇଛି ଯାହା ତନ୍ତ୍ରବାଦ ବୋଲି ସ୍ୱୀକୃତ । ପଶୁବଳି ତନ୍ତ୍ରବାଦର ଆଉ ଏକ କୁଖ୍ୟାତ ପର୍ଯ୍ୟାୟ ଯାହା ମହାତ୍ମା ବୁଦ୍ଧଙ୍କ ଆବିର୍ଭାବ ପୂର୍ବରୁ ଭାରତୀୟ ଧର୍ମଧାରଣାରେ ପ୍ରତିଷ୍ଠିତ ଥିଲା ଏବଂ ତାହାର ବିଲୋପସାଧନ ପାଇଁ ବୁଦ୍ଧଦେବଙ୍କର ଥିଲା ବୌଦ୍ଧଧର୍ମ ପ୍ରଚାର । ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେଉଁ ବୁଦ୍ଧ ତାନ୍ତ୍ରିକ ପରମ୍ପରାର ଘୋର ବିରୋଧୀ ହୋଇ ଅସଂଯତ ବ୍ରାହ୍ମଣ୍ୟ ଧର୍ମର ପକ୍ଷ ଛେଦନ କରି ବୌଦ୍ଧ ଧର୍ମର ତି ିମ ବଢାଇଥିଲେ, ସେହି ପରବର୍ତ୍ତୀ ବୌଦ୍ଧବାଦୀମାନେ ମୂର୍ତ୍ତିପୂଜା ପ୍ରଚଳନ କରି ବହୁ ସହଜୀୟା ପଦ୍ଧତିକୁ ଅନୁସରଣ କରିବା ସଙ୍ଗେ ସଙ୍ଗେ ତାନ୍ତ୍ରିକ ଅସଂଯତ ଯୌନ ଭିତ୍ତାର କୁତ୍ସିତ ଚିତ୍ରାବଳୀ ପ୍ରଦର୍ଶନ କରାଇଥିଲେ । ମୋଟ ଉପରେ କହିବାକୁ ଗଲେ ତାନ୍ତ୍ରିକ ପରମ୍ପରାର ବହୁଳ ପ୍ରଚଳନ ଭାରତୀୟ ପରମ୍ପରାରେ ପ୍ରବର୍ତ୍ତନ କରିବାରେ ବୌଦ୍ଧବାଦୀମାନଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ଦଠାବଂଶ, ମାଳତୀମାଧବ, ପାର୍ଶ୍ୱନାଥ ଚରିତ, ଦଶକୁମାର ଚରିତ, ପ୍ରବୋଧ ଚନ୍ଦ୍ରୋଦୟ, ଚନ୍ଦ୍ରକଳା ଇତ୍ୟାଦି ଗ୍ରନ୍ଥମାନଙ୍କରେ ନରକପାଳ ସଂଗ୍ରହ କରୁଥିବା କାପାଳିକମାନଙ୍କ ନିରୀହ କୁମାରୀମାନଙ୍କୁ ଦେବୀଙ୍କ ବିଗ୍ରହ ଆଗରେ ବଳି ପ୍ରଦାନର ଚିତ୍ରାବଳୀ ପ୍ରଦର୍ଶିତ ହୋଇଅଛି । ଏହି ବଳିପ୍ରଥା ଶାକ୍ତାଶ୍ରୟୀମାନଙ୍କୁ ଏପରି ପ୍ରଭାବିତ କରିଥିଲା ଯେ, ତାହା ବହୁଦିନ ପର୍ଯ୍ୟନ୍ତ ଭାରତୀୟ ଧର୍ମଧାରଣାରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା, ଏପରିକି ଧରିତ୍ରୀ ମା'ଙ୍କୁ ପୂଜା କରି, ତା'ର ସନ୍ତୋଷ ପାଇଁ ମଣିଷ ଓ ପଶୁବଳୀ ଉତ୍ସର୍ଗୀକୃତ କରି ଅଧିକ ଶସ୍ୟ ଉତ୍ପାଦନ କରିବାର ଅଭିପ୍ସା ଆଦିବାସୀ ସମାଜରେ ବହୁଳ ଭାବରେ ଦେଖା ଦେଉଥିଲା । ପରବର୍ତ୍ତୀ ସମୟରେ ଇଂରେଜମାନଙ୍କ ଉଦ୍ୟମରେ ତାହା ବନ୍ଦ ହେବା ଇତିହାସ ପୃଷ୍ଠାରେ ବର୍ଣ୍ଣିତ ହୋଇଅଛି ।

ଆମର ପୂର୍ବପୁରୁଷମାନେ ବୃକ୍ଷ ପୂଜା ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ତାପରେ ଭାରତବର୍ଷରେ ଶୈବ ଓ ଶାକ୍ତବାଦର ଅଭ୍ୟୁଦୟ ହୋଇଥିଲା ଏବଂ ଶେଷ ପର୍ଯ୍ୟାୟରେ ତନ୍ତ୍ରବାଦ ଏସବୁରି ଉପରେ ମୁ ଟେକି ଭାରତୀୟ ଧର୍ମଧାରଣାରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଆଣିଥିଲା । ଏହି ବୃକ୍ଷ ପୂଜା ଅଷ୍ଟ୍ରିକ୍ ସଂସ୍କୃତିଠାରୁ ଆରମ୍ଭ କରି ଆର୍ଯ୍ୟ ସଂସ୍କୃତି ପର୍ଯ୍ୟନ୍ତ ବ୍ୟାପୀ ଯାଇଥିଲା । ଭାରତବର୍ଷରେ ଖ୍ରୀଷ୍ଟପୂର୍ବ ୨୫୦୦ ବର୍ଷ ପୂର୍ବେ ଅଷ୍ଟ୍ରିକ୍‌ମାନେ ଅଧିକାଂଶ ଅଞ୍ଚଳରେ ବାସ କରୁଥିଲେ, ତାପରେ ଦ୍ରାବିଡ଼ ଓ ପରେ ଆର୍ଯ୍ୟମାନେ ପ୍ରବେଶ କରିଥିଲେ । ଡଃ ବାସୁଦେବ ସାହୁ ତାଙ୍କ "ସମନ୍ୱୟ ଦେବତା" ପ୍ରବନ୍ଧରେ ବୃକ୍ଷପୂଜା ଉପରେ ଆଧାରିତ ଅଷ୍ଟ୍ରିକ, ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଏକ ତୁଳନାତ୍ମକ ବିବରଣୀ ଦେଇ ମତପ୍ରକାଶ କରନ୍ତି– ଅଷ୍ଟ୍ରିକମାନେ ବୃକ୍ଷ ମଧ୍ୟରେ ଥିବା ଏକ ସ୍ଥୂଳଶକ୍ତି ଉପରେ ବିଶ୍ୱାସ ରଖୁଥିବା ବେଳେ, ଦ୍ରାବିଡ଼ମାନେ ବୃକ୍ଷର ସ୍ଥୂଳରୂପ ମଧ୍ୟରେ ଏକ ଅନ୍ତର୍ନିହିତ ସୂକ୍ଷ୍ମ ଶକ୍ତି ଉପରେ ବିଶ୍ୱାସ ରଖୁଥିଲେ ଓ ଆର୍ଯ୍ୟମାନେ ସ୍ଥୂଳ ସୂକ୍ଷ୍ମାଦି ଅତିକ୍ରମ କରି ଏକ ଅତିମାନସିକ ଅନନ୍ୟ ସାଧାରଣ ଶକ୍ତିକୁ ସ୍ୱୀକାର କରିଥିଲେ । ଏହି ମହା ସମନ୍ୱୟ ସୃଷ୍ଟିର ବହୁ ପ୍ରାରମ୍ଭରୁ ଏକ ମନ୍ୱନ୍ତର ସୃଜନବେଗ ବଢାଇ ଏକ ମହାନ ସତ୍ୟତାତ୍ତ୍ୱ ଅନୁସନ୍ଧାନ ଦେଖାଇଥିଲା ।

ପୂର୍ବରୁ ଆଲୋଚିତ ହୋଇଛି ଯେ ମହେଞ୍ଜୋଦାରୋ ଓ ହରପ୍ପାର ଖନନାଂଶରୁ ମିଳିଥିବା ମୋହର ସେତେବେଳେ ଶିବଶକ୍ତି ଓ ମାତୃଶକ୍ତିର ପୂଜା ପ୍ରଚଳିତ ଥିବାର ଅନୁମାନ କରାଯାଏ । ତା'ପରବର୍ତ୍ତୀକାଳରେ ଅର୍ଥାତ୍ ଆର୍ଯ୍ୟମାନେ ଭାରତବର୍ଷରେ ଅବସ୍ଥାନ କରୁଥିବା ସମୟରେ ଧାର୍ମିକ ଚେତନାରେ ବହୁ ପରିବର୍ତ୍ତନ ଆସିଥିଲା । ଏମାନେ ପ୍ରକୃତିର ବୃକ୍ଷ, ପଶୁ, ପକ୍ଷୀଙ୍କଠାରୁ ଦୂରେଇଯାଇ ଚନ୍ଦ୍ର, ସୂର୍ଯ୍ୟ, ବରୁଣ,ବାୟୁ, ଜଳ ଇତ୍ୟାଦି ପୂଜାଦି କାର୍ଯ୍ୟରେ ଅଧିକ ମନୋନିବେଶ କରିଥିଲେ । ପଶୁବଳି ଥିଲା ସେମାନଙ୍କ ପୂଜାପଦ୍ଧତିର ଏକ କୁତ୍ସିତ ମାର୍ଗ, ତେଣୁ ତାନ୍ତ୍ରିକ ମତବାଦ ଭାରତୀୟ ଧର୍ମଧାରଣାରେ ନିଶ୍ଚିତ ଅନୁପ୍ରବେଶ କରିଥିଲା । ତାପରେ ରାଜ୍ୟ ରକ୍ଷା କରିବା ପାଇଁ ହେଉ ବା ଶତ୍ରୁ ବିନାଶ କରିବା ପାଇଁ ହେଉ ସେମାନେ କେତେକ ଅଶରୀରୀ ଅଦୃଷ୍ଟ ଶକ୍ତିର ଆଶ୍ରୟ ନେଉଥିଲେ, ଯାହାଙ୍କ ପୂଜାପଦ୍ଧତି ତାନ୍ତ୍ରିକ ମତବାଦ ଉପରେ ଆଧାରିତ ଥିଲା । ଅବଶ୍ୟ ବର୍ତ୍ତମାନ ସୁଦ୍ଧା ଯେତେ ଅଭିଲେଖମାନ ଆବିଷ୍କୃତ ହୋଇଅଛି, ତନ୍ମଧ୍ୟରୁ ଖ୍ରୀଷ୍ଟାବ୍ଦ ୪୯୧ରେ ଏକ ପ୍ରସ୍ତର ଅଭିଲେଖରେ ଖୋଦିତ ଦେବୀ ଦୁର୍ଗାଙ୍କ ବର୍ଣ୍ଣନା ସର୍ବ ପ୍ରଥମ ବୋଲି ମନେ ହୁଏ–

ଦେବୀ ଜୟତ୍ୟ ସୁରଦାରଣ ତୀକ୍ଷ୍ଣ ଶୂଳା
ପ୍ରୋଦ୍‌ଗୀର୍ଣ୍ଣରତ୍ନ ପ୍ରକୁଟାଂଶୁବଳ ପ୍ରବାହ
ସିଂହୋ ପ୍ରଯୁକ୍ତରଥ ମାଣ୍ଡିତ ଚ ବେଗା
ଭୁଜଙ୍ଗ ଦୁଷ୍ଟବିନିପାତ ନିବିଷ୍ଟବେଶା

(E.I.XXX-P-1,24)

ଦୁର୍ଗା ଶବ୍ଦକୁ ବ୍ୟାଖ୍ୟା କଲେ ଆମେ ଏହି ସତ୍ୟରେ ଉପନୀତ ହେବୁ– ଦୁର୍ଗ+ଆ ଦୁର୍ଗା ଅର୍ଥାତ୍ ଦୁର୍ଗକୁ ରକ୍ଷା କରିବାର ଦାୟିତ୍ୱ ଥିବା ମହାଶକ୍ତି ଦୁର୍ଗା ନାମରେ ଖ୍ୟାତା, ଅର୍ଥାତ୍ ପ୍ରତ୍ୟେକ ରାଜା ନିଜ ରାଜ୍ୟ ରକ୍ଷା କରିବା ପାଇଁ ଯେଉଁ ଅଦୃଷ୍ଟ ଶକ୍ତିର ସାହାଯ୍ୟ ନେଉଥିଲେ, ସେ ହିଁ ଥିଲେ ମହାଶକ୍ତି ଦୁର୍ଗା ସ୍ୱରୂପା । ଅନ୍ୟ ଅର୍ଥରେ କୁହା ଯାଇପାରେ ଦୁର୍ଗତିକୁ ନାଶ କରିବା ପାଇଁ ଜନସମାଜ ଯେଉଁ ଶକ୍ତିର ଆଶ୍ରୟ ନେଉଥିଲେ, ସେହି ଶକ୍ତି ହେଉଛନ୍ତି ମହାମାୟା ଦୁର୍ଗା । ଏହି ଶକ୍ତି ପୂଜାର ମୂଳରାଚ୍ଛ ସେ ମହେଞ୍ଜୋଦାରୋ ଓ ହରପ୍ପାରୁ ପ୍ରାପ୍ତ ମାତୃ ଶକ୍ତିର ରୂପାନ୍ତର–ଏଥିରେ ଦ୍ୱିରୁକ୍ତିର ପ୍ରଶ୍ନ ନାହିଁ । ମହାଭାରତ ଗ୍ରନ୍ଥରେ ବ୍ୟାସଦେବ ତାଙ୍କୁ ବିରଜା ବା ଭଦ୍ରାକାଳୀ ରୂପେ ବର୍ଣ୍ଣନା କରିଅଛନ୍ତି । ବିରଜା ବସ୍ତୁତଃ ଦ୍ୱିଭୁଜା, ଯାହା ଅଦ୍ୟାପି ଭାରତବର୍ଷରେ ବିରଳ । ମନେହୁଏ ପ୍ରଥମ ମାତୃ ଶକ୍ତି ଭାବେ ଆମର ପୂର୍ବପୁରୁଷମାନେ ଦ୍ୱିଭୁଜାଶକ୍ତିଙ୍କୁ ପୂଜା କରି ପରବର୍ତ୍ତୀ ସମୟରେ ଚତୁର୍ଭୁଜା, ଅଷ୍ଟଭୁଜା..........ଅଷ୍ଟାଦଶଭୁଜା ପର୍ଯ୍ୟନ୍ତ ପରିବ୍ୟାପ୍ତ କରିଥିଲେ । ଗବେଷକ ରାମପ୍ରସାଦ ଚନ୍ଦ ତାଙ୍କ ଗ୍ରନ୍ଥରେ ଦ୍ୱିଭୁଜାଶକ୍ତିଙ୍କୁ ଆଦ୍ୟାଶକ୍ତି ଭାବେ ଗ୍ରହଣ କରିଅଛନ୍ତି ଓ ମା' ବିରଜା ଦ୍ୱିଭୁଜା ଥିବାରୁ ତାଙ୍କୁ ଅତି ପ୍ରାଚୀନ ବୋଲି ମତବ୍ୟକ୍ତ କରିଅଛନ୍ତି । ସେହିପରି କାଳୀ ଅର୍ଥାତ୍ କାଳ+ଈ–କାଳକୁ ନିବାରଣ କରୁଥିବା ଆଦ୍ୟାଶକ୍ତି କାଳୀ ନାମରେ ନାମିତା । ମାତୃପୂଜା କାଳ ବା ଦୁର୍ଗତିନାଶନ କରିବା ନିମିତ୍ତ ଅଭିପ୍ରେତ ଥିବାରୁ ପରବର୍ତ୍ତୀକାଳରେ ଦୁର୍ଗା ବା କାଳୀ ଶକ୍ତିଙ୍କ ରୂପାନ୍ତରିତ ନାମ ଭାବେ ପରିଗଣିତ ହୋଇଛନ୍ତି । ଅବଶ୍ୟ ତନ୍ତ୍ରବାଦର ବହୁଳ ପ୍ରଚାର ଓ ପ୍ରସାର ସେତେବେଳକୁ ଭାରତୀୟ ଧର୍ମଧାରଣା ଉପରେ ବିଶେଷ ଆଚ୍ଛାଦିତ ହୋଇଥିଲା । ତନ୍ତ୍ରବାଦର ପ୍ରଚାର ଓ ପ୍ରସାର ପାଇଁ ହିଁ ଯାମଳାତନ୍ତ୍ର ଭାରତୀୟ ଦର୍ଶନ ଶାସ୍ତ୍ରରେ ଲିପିବଦ୍ଧ ହୋଇ ସାରିଥିଲା । ବୌଦ୍ଧ ତାନ୍ତ୍ରିକମାନେ ତନ୍ତ୍ରଯାନ ମାଧ୍ୟମରେ ଦେବୀ ସାଧନା କରୁଥିବା ବେଳେ ହିନ୍ଦୁମାନେ ତନ୍ତ୍ରଯାମଳାରେ ତଦ୍ରୂପ ମତ ଗ୍ରହଣ କରିଥିଲେ । ଭାରତୀୟ ତନ୍ତ୍ର ସାଧନାର ପୃଷ୍ଠପୋଷକ ଭାବରେ ବହୁ ଗ୍ରନ୍ଥ ଦେଖିବାକୁ ମିଳେ, ଯଥା–ରୁଦ୍ରଯାମଳ, କୁବେର ଯାମଳ, ସ୍କନ୍ଦ ଯାମଳ, ବ୍ରହ୍ମ ଯାମଳ, ବିଷ୍ଣୁ ଯାମଳ, ଯମ ଯାମଳ, ବାୟୁ ଯାମଳ ଓ ଇନ୍ଦ୍ର ଯାମଳ ଇତ୍ୟାଦି । ବ୍ରହ୍ମ ଯାମଳର ପରିଶିଷ୍ଟ ଜୟଦ୍ରଥ ଯାମଳରେ ଭାରତବର୍ଷର ଦୁଇତନ୍ତ୍ରପୀଠ ଭାବେ କାମରୂପ (ଆସାମ) ଓ ଉଡ୍ଡିୟାନ ପୀଠ (ଉଡ୍ର ଦେଶ)ର ବର୍ଣ୍ଣନା ଅଛି । ଐତିହାସିକ ନବୀନକୁମାର ସାହୁ, କେଦାରନାଥ ମହାପାତ୍ର, ହରପ୍ରସାଦ ଶାସ୍ତ୍ରୀ ଓ ବିନୟତୋଷ ଭଟ୍ଟାଚାର୍ଯ୍ୟ ମତପୋଷଣ କରିଅଛନ୍ତି ଯେ ଉଡ୍ଡିୟାନ ପୀଠ ଓଡ଼ିଶା ବ୍ୟତୀତ ଆଉ କୌଣସି ପୀଠ ହୋଇ ନପାରେ କାରଣ ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଶା ବଜ୍ରଯାନ ବୌଦ୍ଧ ପୀଠ ଭାବେ ଖ୍ୟାତି ଅର୍ଜନ କରିଥିଲା ଓ ଏହା ଉଡ୍ଡିୟାନ ପୀଠ ଭାବେ ଦେଶ ବିଦେଶରେ ଖ୍ୟାତିଲାଭ କରି ଥିବାର ଦୃଷ୍ଟାନ୍ତ ବହୁ ତାମ୍ରଫଳକ ଓ ଖୋଦନରୁ ପ୍ରମାଣ ମିଳିଛି । ତେଣୁ ବହୁ ପ୍ରାଚୀନକାଳରୁ ଉତ୍କଳ ଯେ ଏକ ମାତୃପୂଜାର କେନ୍ଦ୍ର ଭୂମି ଥିଲା ଏଥିରେ ସନ୍ଦେହ ନାହିଁ । ଜୟଦ୍ରଥ ଯାମଳାରେ ଯେଉଁ ଦେବୀଙ୍କ ନାମ ଉଲ୍ଲେଖ ଅଛି, ତାହା 'କାଳୀକା' ନାମରେ ନାମିତା ଏବଂ ସେହି ଦେଶ ପ୍ରକାରାନ୍ତରେ ପର୍ଣ୍ଣଶବରୀ (ପତର ସଦୃଶ) ଭାବରେ ମଧ୍ୟ ପୂଜିତା । ଏହି ପର୍ଣ୍ଣଶବରୀ ଜଙ୍ଗଲରୁ ପତ୍ର ଆଣି ଅଙ୍ଗ ଆବୃତ କରିଥିବା ଆଦିବାସୀ ରମଣୀଙ୍କ ପରି ପରିହିତା ଥିବାରୁ, ଆଦିବାସୀମାନଙ୍କ ଉପାସ୍ୟ ଦେବୀ ଥିଲେ ପର୍ଣ୍ଣଶବରୀ । ପ୍ରକାରାନ୍ତରେ ମା' ଆଦ୍ୟାଶକ୍ତି ଦୁର୍ଗା ।

ପଶ୍ଚିମ ଓଡ଼ିଶା ଶିଳାଲେଖରେ ମା'ଖମ୍ବେଶ୍ୱରୀଙ୍କ ବର୍ଣ୍ଣନା ରହିଛି। ଏହା ସୁଚେଇଦିଏ ପ୍ରାଚୀନ ଉତ୍କଳ ଥିଲା ମାତୃଶକ୍ତିର ପୀଠସ୍ଥଳୀ। ଓଡ଼ିଶାର ଶୁଲ୍‌କୀ ବଂଶୀୟ ରାଜାମାନେ ଏହି ଖମ୍ବେଶ୍ୱରୀଙ୍କ ପୂଜା କରୁଥିବାର ଅନୁମାନ କରାଯାଏ । କଳାହାଣ୍ଡିର ତେରୋସିଙ୍ଗା ଗ୍ରାମରୁ ୬ମ ଶତାବ୍ଦୀର ଗୋଟିଏ ତାମ୍ର ଶାସନରେ "ଖମ୍ବେଶ୍ୱରୀ"ଙ୍କ ନାମ ଉଲ୍ଲେଖ ଥିବାର ଜଣାପଡ଼ିଛି। ୯ମ ଶତାବ୍ଦୀ କୁଳସ୍ତମ୍ଭ ରାଜାଙ୍କର ହିନ୍ଦୋଳ ତାମ୍ର ଶାସନରେ ଖମ୍ବେଶ୍ୱରୀ ନାମ ମଧ୍ୟ ବର୍ଣ୍ଣିତ ଅଛି–

"ଖମ୍ବେଶ୍ୱରୀ ଲବ୍‌ଧବର ପ୍ରସାଦେ
ଶୁଲ୍‌କୀ କୁଳୋଦ୍ଭୂତ୍‌ କ୍ଷିତିପକ୍ଷତାରିଃ "

(J.K.HRS-Vol.-II No. II pp 107-110)

ଖମ୍ବେଶ୍ୱରୀ କାଷ୍ଠରେ ନିର୍ମିତ ଖମ୍ବାକୃତି ଥିବାରୁ ତାଙ୍କୁ ମା'ସୁଭଦ୍ରାଙ୍କ ପୂର୍ବରୂପା ବୋଲି ମନେ କରାଯାଏ । ଶ୍ରୀମନ୍ଦିରରେ ମହାପ୍ରଭୁ ଜଗନ୍ନାଥଙ୍କ ସହ ଭାଇ ବଳରାମ ଓ ଭଉଣୀ ସୁଭଦ୍ରାଙ୍କୁ ନେଇ ଯେଉଁ ରହସ୍ୟ ରଚନା କରାଯାଇଅଛି, ଏହା କେବଳ ଶୈବ ଓ ଶାକ୍ତ ଭାବନାରେ ବୈଷ୍ଣବୀୟ ରଙ୍ଗକୁ ସମ୍ମିଶ୍ରଣ କରିବା ବ୍ୟତୀତ ଆଉ କିଛି ନୁହେଁ । ତେଣୁ ବହୁ ପ୍ରାଚୀନକାଳରୁ ପ୍ରଚଳିତ ଶୈବ ଓ ଶାକ୍ତ ଚିନ୍ତାଧାରା ସହ ପରବର୍ତ୍ତୀକାଳରେ ବୈଷ୍ଣବୀୟ ଭାବଧାରାର ସମ୍ମିଶ୍ରଣ ହିଁ ଆଦିବାସୀ ଓ ଉଦ୍ରଭାଷୀ, ଅନାର୍ଯ୍ୟ ଓ ଆର୍ଯ୍ୟ, ତଥା ଛୁଆଁ ଓ ଅଛୁଆଁ ଭେଦାଭେଦର ଏକ ଭାବସମନ୍ୱୟ । ଏ ସ୍ରୋତ ଏତେ ପ୍ରଖର ହେଲା ଯେ ଶବରୀ କନ୍ୟା ଲଳିତା ଓ ବ୍ରାହ୍ମଣ ଯୁବ ବିଦ୍ୟାପତିର ସୁସମ୍ପର୍କରେ ସୃଷ୍ଟି ହେଲା ଏକ ଅଭିନବ ସମ୍ପ୍ରଦାୟ–ଦଇତାପତି । ଖାଲି ସେତିକି ନୁହେଁ ପୁରୁଷୋତ୍ତମ କ୍ଷେତ୍ରରେ ଆରମ୍ଭ ହେଲା ଦୁର୍ଗାମାଧବ ପୂଜା । ଶ୍ରୀକ୍ଷେତ୍ରରେ ମା'ଦୁର୍ଗା ହେଉଛନ୍ତି ଭୈରବୀ ଓ ମହାପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ଭୈରବ । ଷୋଡ଼ଶ ଦିନ ବ୍ୟାପୀ ଦୁର୍ଗାମାଧବଙ୍କୁ ଏକତ୍ର ପୂଜାର୍ଚ୍ଚନା କରାଯାଏ । ମା ଦୁର୍ଗା ପ୍ରକାରାନ୍ତରେ ହେଉଛନ୍ତି ମହାପ୍ରଭୁଙ୍କ ଏକ ଶକ୍ତି । ଏଠାରେ ଅବଶ୍ୟ ଶୈବଶକ୍ତି ବୈଷ୍ଣବୀୟ ଶକ୍ତିର ଅନ୍ତରାଳରେ ଚିର ଉଦ୍‌ବୁଦ୍ଧ କାରଣ ଶ୍ରୀକ୍ଷେତ୍ରରେ ମହାପ୍ରଭୁ ବଳରାମ ଶୈବ ଶକ୍ତିର ବାହାକ, ପ୍ରଭୁ ଶ୍ରୀଜଗନ୍ନାଥ ବୈଷ୍ଣବୀୟ ଭାବଧାରାର ଉତ୍ସ । ଏ ଦୁଇ ଅଭିନ୍ନ ଭାବରେ ଶକ୍ତିର ପ୍ରତୀକ ମା' ସୁଭଦ୍ରା, ମା ଦୁର୍ଗା ଓ ବିମଳା ଅଙ୍ଗୀଅଙ୍ଗୀ ଭାବେ ଜଡ଼ିତ । ସେଥିପାଇଁ ଚ ୀରେ ଉଲ୍ଲେଖ ଅଛି –

"ତ୍ୱଂ ବୈଷ୍ଣବୀ ଶକ୍ତି ଅନନ୍ତବୀର୍ଯ୍ୟା
ବିଶ୍ୱସ୍ୟବୀଜଂ ପରମାସି ମାୟା"

ଅର୍ଥାତ୍‌ ମା' ଦୁର୍ଗା ହେଉଛନ୍ତି ବିଷ୍ଣୁଙ୍କର ଯୋଗମାୟା । ବିଷ୍ଣୁଙ୍କ ପରି ଅଭିନ୍ନ ଭାବେ ମା ଦୁର୍ଗାଙ୍କର ମଧ୍ୟ ଦଶାବତାର ଦଶ ମହାବିଦ୍ୟାର ପ୍ରତୀକ ଭାବେ ବର୍ଣ୍ଣିତ ।

କୃଷ୍ଣସ୍ତୁ କାଳିକାଦେବୀ ଶ୍ରୀରାମ ତାରିଣୀ ତଥା
ଭାର୍ଗବ ଷୋଡ଼ଶୀ ବିଦ୍ୟା ବାମନୋ ଭୁବନେଶ୍ୱରୀ
ମତ୍ସ୍ୟସ୍ତୁ ବଗଳାଦେବୀ ବରାହୋ ଛିନ୍ନମସ୍ତକା
ଧୂମାବତୀ କୂର୍ମରୂପା ନୃସିଂହୋ ଭୈରବୀସ୍ୱୟଂ
ବୁଦ୍ଧରୂପା ମହାଲକ୍ଷ୍ମୀ ମାତଙ୍ଗୀ କଳ୍‌କୀରୂପିଣୀ
ଏତେ ଦଶମହାବିଦ୍ୟାଃ ଅବତାରାଃ ହରେର୍ଦ୍ଦଶା ।

ଶ୍ରୀକ୍ଷେତ୍ରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅବିଚ୍ଛେଦ୍ୟ ଅଙ୍ଗ ଭାବେ ପରମବୈଷ୍ଣବୀ ମା' ସୁଭଦ୍ରା ଆବିର୍ଭୂତା ଥିବା ବେଳେ, ତାଙ୍କର ଅନ୍ୟ ଏକ ଶକ୍ତି ଭାବେ ମା' ବିମଳା ଭୈରବୀ ଭାବେ ପୂଜିତା । "ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ।"

ଶବରମାନଙ୍କ "କିତୁଙ୍ଗ" ଦେବତାଙ୍କ ଦଶାବତାର ଓ ତନ୍ମଧ୍ୟରୁ ଅନ୍ୟତମ ଅବତାର 'ଜଗନ୍ତ' ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରୂପାନ୍ତର ବୋଲି ମନେ କରାଯାଏ । କନ୍ଧମାନଙ୍କ ଦ୍ୱାରା ପୂଜିତ ତିନି ଦେବତା କାକେରୀ ପେନୁ, ତାନାପେନୁ ଓ ମୁରବି ପେନୁଙ୍କ ସହିତ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ମୂର୍ତ୍ତିତ୍ରୟର ସାମଞ୍ଜସ୍ୟ ଅଛି ବୋଲି ପ ିତ ସୂର୍ଯ୍ୟ ନାରାୟଣ ଦାଶ ମତପ୍ରକାଶ କରନ୍ତି । ଡକ୍ଟର ବଂଶୀଧର ମହାନ୍ତି ତାନାପେନୁଙ୍କୁ ପୃଥିବୀ କାକେରୀ ପେନୁଙ୍କୁ ପୃଥିବୀ ଦେବୀଙ୍କ ସ୍ୱାମୀ ଓ ମୁରବିପେନୁଙ୍କୁ ତାନାଙ୍କ ଭାଇ ଭାବେ ମତପ୍ରକାଶ କରି ତାଙ୍କୁ ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ବଳଭଦ୍ର ଭାବେ ମତପୋଷଣ କରନ୍ତି । ଏଥିରୁ ପ୍ରମାଣିତ ହେଉଛି ଆଦିବାସୀ ସମ୍ପ୍ରଦାୟ ଶ୍ରୀଜଗନ୍ନାଥ ତତ୍ତ୍ୱର ପୃଷ୍ଠଭାଗରେ ମା ଧରିତ୍ରୀର ପୂଜାକୁ ସନ୍ନିବେଶିତ କରି ଏହାକୁ ମାତୃ ପୂଜାର ପରାକାଷ୍ଠା ଭାବେ ଗ୍ରହଣ କରିଥାନ୍ତି । ସେହିପରି ସାନ୍ତାଳମାନେ ସୂର୍ଯ୍ୟଙ୍କୁ ସିଙ୍ଗବୋଙ୍ଗା, ପର୍ବତକୁ ମାରାଂବୁରୁ, ବଣଦେବୀଙ୍କୁ ଜାହେର–ଏରା ଭାବେ ଏକତ୍ର ପୂଜା କରନ୍ତି । ଏହା ପ୍ରକାରାନ୍ତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଭାବେ ଉପାସିତ । ଡଃ ଖଗେଶ୍ୱର ମହାପାତ୍ର, ଗୁରୁ ଶ୍ରୀରାମାଙ୍କ ପ୍ରତିଷ୍ଠିତ ଧର୍ମ ପରମ୍ପରାର ଆଲେଖ୍ୟ "ମଗାରବ୍ରହ୍ମ ତନ୍ତ୍ରୀ" ପ୍ରସଙ୍ଗରେ ମତବ୍ୟକ୍ତ କରି କହନ୍ତି ସଉରା ସମ୍ପ୍ରଦାୟର ନବଜାଗରଣ ସହିତ ଜଗନ୍ନାଥ ଧର୍ମର ନବରୂପରେ ପ୍ରବର୍ତ୍ତନ ଜଗନ୍ନାଥ ଧର୍ମଧାରାରେ ଏକ ବିଶେଷ ଐତିହାସିକ ଘଟଣା । ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତିଙ୍କ ଭାଷାରେ ଜଗନ୍ନାଥଙ୍କ ମୂଳରୂପ ଓ ନାମ 'ଜନାଂଲୋ'–ଯାହା ଆଦିବାସୀ ଧର୍ମଧାରଣା ଉପରେ ପ୍ରତିଷ୍ଠିତ । ଡଃ ବଂଶୀଧର ମହାନ୍ତିଙ୍କ ମତରେ "ବ୍ରାହ୍ମଣ୍ୟକରଣ ପ୍ରକ୍ରିୟାରେ ଓ ସେହି ଦେବତା ଐତିହାସିକକ୍ରମରେ ନୀଳାଚଳବାସୀ ଶ୍ରୀଜଗନ୍ନାଥ ଭାବେ ବିବର୍ତ୍ତିତ ଓ ପ୍ରତିଷ୍ଠିତ ।" ତେଣୁ ମୋଟ ଉପରେ କୁହାଯାଇ ପାରେ ଅତୀତର ଶବରନାରାୟଣ ବର୍ତ୍ତମାନ ଶ୍ରୀଜଗନ୍ନାଥ ଓ ସେହିପରି ଆଦିବାସୀ ସଂସ୍କୃତିର ଠାକୁରାଣୀ ପର୍ଣ୍ଣଶବରୀ ଓ ଖମ୍ବେଶ୍ୱରୀ ବର୍ତ୍ତମାନର ମା' ସୁଭଦ୍ରା । ପୁଳିନ୍ଦ ସେନଙ୍କ ଆରାଧ ଦେବତା 'ସ୍ୱୟଂଭୁ' ପରବର୍ତ୍ତୀକାଳରେ ଶୈଳୋଦ୍ଭବ ବଂଶର 'ସ୍ୱୟଂଭୁ' । ମହାପ୍ରଭୁ ବଳରାମଙ୍କ ସେ ପ୍ରତୀକ ଭାବେ ପ୍ରତିଷ୍ଠିତ । ଏଥିରୁ ଅନୁମିତ ହୁଏ ଆଜିର ଧର୍ମଧାରଣା ପ୍ରାଚୀନ ଆଦିବାସୀମାନଙ୍କ ଧର୍ମଧାରଣାରୁ କିଛି ଅଭିନ୍ନ ନୁହେଁ କେବଳ ସମୟର ସ୍ରୋତରେ କିଛି ରଙ୍ଗର ପରିବର୍ତ୍ତନ ଘଟିଛି । ବସ୍ତୁତଃ ତାହା ଏକ ଓ ଅଭିନ୍ନ । ଆଦିବାସୀମାନେ ଯାହାକୁ ପାଷାଣଗାତ୍ରରେ ଖୋଦିତ କରି ବିଗ୍ରହ ଭାବେ ପୂଜା କରୁଥିଲେ, ଆମ୍ଭେମାନେ ତାଙ୍କୁ ପ୍ରଶସ୍ତ ମୂର୍ତ୍ତିରେ ଆରାଧନା କରି ଆସୁଛୁ ।

---

ଶେଷ୍ଠାଳ କଲୋନୀ,
ଲ–୩୭/୩, ଭୁବନେଶ୍ୱର

# ଗାନ୍ଧିଜୀ ଓ ସାମ୍ବାଦିକତା

ଶ୍ରୀ ବସନ୍ତ କୁମାର ମହାପାତ୍ର

ଗାନ୍ଧିଜୀଙ୍କର ମହନୀୟ କାର୍ଯ୍ୟାବଳୀ ପାଇଁ ତାହାଙ୍କୁ ମହାତ୍ମା ନାମରେ ଆଖ୍ୟାୟିତ କରାଯାଇଅଛି । ତାଙ୍କର ଅନ୍ୟାନ୍ୟ ମହତ କାର୍ଯ୍ୟଗୁଡ଼ିକୁ ବିଶୁରକୁ ନନେଇ ମଧ୍ୟ ଜଣେ ଶ୍ରେଷ୍ଠ ସାମ୍ବାଦିକ ଭାବେ ବିଶ୍ୱ ତାଙ୍କୁ ଚିରକାଳ ମନେ ରଖିଥିବ ।

ଗାନ୍ଧିଜୀଙ୍କର ସାମ୍ବାଦିକତା ଆରମ୍ଭ ହୁଏ ପ୍ରଥମେ ଯେତେବେଳେ ସେ ଦକ୍ଷିଣ ଆଫ୍ରିକାରେ "ଦି ଇଣ୍ଡିଆନ୍ ଓପିନିୟନ" ନାମକ ପତ୍ରିକାର ସମ୍ପାଦନା କରନ୍ତି । ତାଙ୍କର ସାମ୍ବାଦିକତା ପ୍ରତି ଆନୁଗତ୍ୟ ତାଙ୍କର ଏହି ପତ୍ରିକାରେ ପ୍ରକାଶିତ ନିମ୍ନୋକ୍ତ ପଙ୍କ୍ତିଗୁଡ଼ିକରୁ ସ୍ପଷ୍ଟ ହୁଏ ।



"ସେବା ହିଁ ସାମ୍ବାଦିକତାର ଲକ୍ଷ୍ୟ ହେବା ଉଚିତ । କିନ୍ତୁ ଗୋଟିଏ ଅବାରିତ ଜଳ ସ୍ରୋତ ଯେପରି ବନ୍ଧ ଭାଙ୍ଗି ଗ୍ରାମାଞ୍ଚଳରେ ପ୍ରବେଶ କରି ଶସ୍ୟ ହାନି ଘଟାଏ, ସେହିପରି ଗୋଟିଏ ଅସଂଯତ କଲମ ସମାଜକୁ ଧ୍ୱଂସ କରିବାରେ ସାହାଯ୍ୟ କରେ" । ତାଙ୍କର ଜୀବନରେ ସଂଯମର ପରୀକ୍ଷା ସେ ବହୁଭାବରେ କରିଛନ୍ତି । ସେଥିଅରୁ ତାଙ୍କର ମାର୍ଗ ସତ୍ୟ ଓ ଅହିଂସାର ମାର୍ଗ ହୋଇଅଛି । ତାଙ୍କ ଦ୍ୱାରା ଆହୁତ ସତ୍ୟାଗ୍ରହ, ଗ୍ରାମ ସ୍ୱରାଜ୍ୟ, ଆଇନ ଅମାନ୍ୟ ଆନ୍ଦୋଳନ ଇତ୍ୟାଦି ରାଜନୈତିକ ପଦକ୍ଷେପ ତଥା ଅସ୍ପୃଶ୍ୟତା ନିଶାନିବାରଣ ଏବଂ ଶିକ୍ଷା ସଂସ୍କାର ଇତ୍ୟାଦି ମୂଳରେ ଏହି 'ସତ୍ୟ ଓ ଅହିଂସା'ର ଉତ୍ସ ଓ ଆଦର୍ଶହିଁ ପଥ ପ୍ରଦର୍ଶକ ରୂପେ କାର୍ଯ୍ୟ କରିଥିଲା ।

ଗାନ୍ଧିଜୀ କହୁଥିଲେ, "ମୁଁ ସାମ୍ବାଦିକତା ଉଦ୍ଦେଶ୍ୟରେ ସାମ୍ବାଦିକତା କରୁନାହିଁ । ମୋ ଜୀବନରେ ଆଦର୍ଶ ବୋଲି ମୁଁ ଯାହା ଭାବିଛି, ତାହାର ଗୋଟିଏ ସହାୟକ ଭାବରେ ମୁଁ ତାକୁ ଗ୍ରହଣ କରିଛି । ମୋ ଜୀବନର ଉଦ୍ଦେଶ୍ୟ 'ହେଉଛି, କଠୋର ସଂଯମ ପାଳନ କରି, ଦୃଷ୍ଟାନ୍ତ ଓ ନୀତିଶିକ୍ଷା ଦ୍ୱାରା ଅନୁପମ ଅସ୍ତ୍ର ସତ୍ୟାଗ୍ରହ, ଯାହାକି ଅହିଂସା ଓ ସତ୍ୟର ପ୍ରତ୍ୟକ୍ଷ ଅନୁସିଦ୍ଧାନ୍ତ, ତାହାର ବ୍ୟବହାର କିପରି କରିବାକୁ ହୁଏ, ତାହାହିଁ ଶିଖାଇବା । ଜୀବନର ବହୁ ଅଶୁଦ୍ଧି ପାଇଁ ଅହିଂସା ବ୍ୟତୀତ ଅନ୍ୟ କୌଣସି ପ୍ରତିକାର ନାହିଁ ବୋଲି ଦେଖାଇ ଦେବାକୁ ମୁଁ କେବଳ ବ୍ୟଗ୍ର ହୁଏ, ବାସ୍ତବିକ୍ ଅଧୈର୍ଯ୍ୟ । ପଥର ପରି କଠୋରତମ ହୃଦୟକୁ ତରଳାଇ ଦେବା ପାଇଁ ଏହା ... ଦ୍ରାବକ । ସେଥିପାଇଁ ... ବିଶ୍ୱାସ ପ୍ରତି ମୁଁ ଅନୁରକ୍ତ ... କ୍ରୋଧରେ ବା ଦ୍ୱେଷବଶରେ ... ଲେଖିନପାରେ । ମୁଁ ଅଳସଭାବରେ କିଛି ଲେଖି ପାରି ନାହିଁ । କାମନାକୁ ଉତ୍ତେଜିତ କରିବା ଉଦ୍ଦେଶ୍ୟରେ ମୁଁ କିଛି ଲେଖିପାରିବି ନାହିଁ । ମୋ ... ପାଇଁ ବିଷୟ ଓ ଶବ୍ଦ ନିର୍ବାଚନରେ ମୁଁ ସପ୍ତାହକୁ ସପ୍ତାହ କେତେ ସଂଯମ ଆଚରଣ କରେ, ସେ ବିଷୟରେ ପାଠକମାନଙ୍କର କିଛି ଧାରଣା ନାହିଁ । ମୋ ପାଇଁ ଏହା ଗୋଟିଏ ତାଲିମ୍ । ମୋ ନିଜ ଭିତରକୁ ଦୃଷ୍ଟି ପକାଇବା ପାଇଁ ଏବଂ ମୋର ଦୁର୍ବଳତାଗୁଡ଼ିକୁ ଆବିଷ୍କାର କରିବା ପାଇଁ ଏହା ମୋତେ ସକ୍ଷମ କରୁଛି । ମୋର ଅହଂକାର, ବେଳେବେଳେ ଉଗ୍ର ଭାଷା ବ୍ୟବହାର କରିବାକୁ କିମ୍ବା ମୋର କ୍ରୋଧ ବେଳେବେଳେ କଟୁ ବିଶେଷଣ ପ୍ରୟୋଗ କରିବାକୁ ବାଧ୍ୟ କରେ । ଏସବୁ ଆବର୍ଜନା ସଫା କରିବା ଏକ ଭୟଙ୍କର ଅଗ୍ନି ପରୀକ୍ଷା ହେଲେ ମଧ୍ୟ ଗୋଟିଏ ସୁନ୍ଦର ପ୍ରୟୋଗ । "ୟଙ୍ଗଇଣ୍ଡିଆ"ର ପୃଷ୍ଠାଗୁଡ଼ିକ ବହୁ ସୁନ୍ଦରଭାବେ ସଜ୍ଜିତ ହୋଇଥିବାର ଆପଣମାନେ ଦେଖୁଥିବେ ଏବଂ ବେଳେବେଳେ ରୋମାରୋଲାଙ୍କ ପରି କହିବାକୁ ଚାହୁଁଥିବେ, "କିପରି ସୁନ୍ଦର ବୁଢ଼ାଟିଏ ହୋଇଥିବ ସିଏ !" ଅଥଚ ପୃଥିବୀ ବୁଝୁ ଯେ, ଏହି ସୁନ୍ଦର ପଣିଆକୁ ଯତ୍ନ ସହକାରେ ଓ ପ୍ରାର୍ଥନାପୂର୍ଣ୍ଣ ଭାବରେ ଅର୍ପଣ କରାଯାଇଛି । ଯେଉଁମାନଙ୍କ ମତାମତକୁ ମୁଁ ପସନ୍ଦ କରେ, ସେହିପରି କେତେକଙ୍କ ଦ୍ୱାରା ... ତାହା ଗ୍ରହଣୀୟ ବୋଲି ପ୍ରମାଣିତ ହୋଇଛି, ତାହାହେଲେ ...

କୁହି ରଖନ୍ତୁ ଯେ, ଯେତେବେଳେ ସେହି ସୁନ୍ଦର ପଣିଆ ସମ୍ପୂର୍ଣ୍ଣଭାବେ ମୋର ସ୍ୱଭାବରେ ପରିଣତ ହୋଇଯିବ, ଅର୍ଥାତ୍ ଯେତେବେଳେ ମୁଁ ମନ୍ଦ କାର୍ଯ୍ୟ ପାଇଁ ସମ୍ପୂର୍ଣ୍ଣ ଅସମର୍ଥ ହୋଇଯିବି ଏବଂ ଯେତେବେଳେ ମୁହୂର୍ତ୍ତକ ପାଇଁ ସୁଦ୍ଧା ମୋର ଚିନ୍ତାରାଜ୍ୟକୁ କୌଣସି କଟୁତା କିମ୍ବା ଔଦ୍ଧତ୍ୟ ଅଧିକାର ନକରିବ, ସେତେବେଳେ ଯାଇ ମୋର ଅହିଂସା ଦ୍ୱାରା ଜଗତର ସମସ୍ତ ହୃଦୟକୁ ବହଲାଇ ଦେଇପାରିବ । ମୁଁ ମୋର ଦର୍ଶକଙ୍କ ଆଗରେ କୌଣସି ଅସମ୍ଭବ ଆଦର୍ଶ କିମ୍ବା କଠୋର ପରୀକ୍ଷା ରଖୁନାହିଁ । ଏହା ମନୁଷ୍ୟର ଜନ୍ମଗତ ଅଧିକାର । ଆମେ ସ୍ୱର୍ଗର ପୁନରାଧିକାର ପାଇଁ ସ୍ୱର୍ଗକୁ ହରାଇଛୁ ।"

ଗାନ୍ଧିଜୀ ୧୭-୧୧-୧୯୨୧ ତାରିଖରେ ୟଙ୍ଗଇଣ୍ଡିଆରେ ଲେଖିଥିଲେ "ବର୍ତ୍ତମାନର ଶାସନ ପ୍ରଣାଳୀ ସମ୍ପୂର୍ଣ୍ଣ ମନ୍ଦ । ଏହାକୁ ସୁଧାରିବାକୁ ବା ଶେଷ କରିବାକୁ ସର୍ବଶେଷ ଜାତୀୟ ପ୍ରଚେଷ୍ଟା ଆବଶ୍ୟକ ବୋଲି ମୁଁ ବିବେଚନା କରେ । ଆତ୍ମୋନ୍ନତି ନିମିତ୍ତ ଏହାର ଅନ୍ତରରେ କୌଣସି ଶକ୍ତି ନାହିଁ । ତେଣୁ ମୁଁ ଏ ସାମ୍ରାଜ୍ୟ ମୋର ବୋଲି କହିବାରେ କୌଣସି ବାହାଦୁରୀ ନାହିଁ କିମ୍ବା ନିଜକୁ ଏକ ନାଗରିକ ଭାବରେ ବର୍ଣ୍ଣନା କରିବା ଅସମୀଚୀନ । ବିପରୀତ କ୍ରମେ ମୁଁ ସମ୍ପୂର୍ଣ୍ଣଭାବେ ହୃଦୟଙ୍ଗମ କରେ ଯେ ମୁଁ ଏହି ସାମ୍ରାଜ୍ୟରେ ଏକ ଅସ୍ପୃଶ୍ୟ ନୀଚ ବ୍ୟକ୍ତି । ତେଣୁ ମୁଁ ଏହାର ଦ୍ରୁତ ପରିବର୍ତ୍ତନ କିମ୍ବା ସମ୍ପୂର୍ଣ୍ଣ ଧ୍ୱଂସ ପାଇଁ ନିରବଚ୍ଛିନ୍ନଭାବେ ପ୍ରାର୍ଥନା କରିବା ବିଧେୟ ।"

ସରକାରଙ୍କର ବିରୁଦ୍ଧରେ ମାନହାନି ସୂଚକ ମନ୍ତବ୍ୟ ପ୍ରକାଶ କରିଥିବାରୁ ତାଙ୍କ ବିରୁଦ୍ଧରେ ମକଦ୍ଦମା ରୁଜୁ କରାଯାଇଥିଲା ଓ ତାଙ୍କୁ ଛ' ବର୍ଷ ଜେଲଦଣ୍ଡ ଆଦେଶ ହୋଇଥିଲା ।

ଗାନ୍ଧିଜୀଙ୍କର ବହୁ ବ୍ୟସ୍ତତା ମଧ୍ୟରେ ତାଙ୍କର ସାମ୍ବାଦିକତା ଥିଲା ଏକ ମୁଖ୍ୟ କାର୍ଯ୍ୟ । କାର୍ଯ୍ୟୋପଲକ୍ଷେ ସ୍ଥାନାନ୍ତରରେ ଥିଲେ ମଧ୍ୟ ତାଙ୍କର ସମ୍ପାଦକୀୟ ସେ ନିଶ୍ଚିତଭାବେ ଲେଖି ପଠାଉଥିଲେ । ହୃଦୟର ଜୟହିଁ ଜୟ ଏବଂ ଦେଶର ସ୍ୱାଧୀନତା ଅହିଂସା ଆନ୍ଦୋଳନ ମାଧ୍ୟମରେ ହାସଲ କରିହେବ, ସେ ସମ୍ବନ୍ଧରେ ସେ 'ୟଙ୍ଗ ଇଣ୍ଡିଆ'ର ୧୧-୮-୧୯୨୦ ସଂସ୍କରଣରେ କହିଥିଲେ "ଦଣ୍ଡଦେବାର ଶକ୍ତି ଯାହାର ଅଛି ସେହିଁ କ୍ଷମା ଦେଇପାରେ । ନିରାଶ୍ରୟ ବ୍ୟକ୍ତିଠାରୁ କ୍ଷମାର ସ୍ୱର ଛଳନା ମାତ୍ର । ଭାରତର ସେହି ନୈତିକ ବଳ ଅଛି । ତାକୁ ନିରାଶ୍ରୟ ବୋଲି ଭାବିବା ଅନୁଚିତ । ଦଣ୍ଡ ଦେବାର ଅଧିକାରକୁ ଉଠାଇ ଦେଲେ ଭାରତ ଅନେକ କିଛି ଲାଭ ପାଇପାରେ । ସତ୍ୟାଗ୍ରହ ତଥା ଆନୁଷଙ୍ଗିକ କାର୍ଯ୍ୟାବଳୀ ଓ ଅସହଯୋଗ ଆନ୍ଦୋଳନ ଅନ୍ୟ କିଛି ନୁହେଁ, ମାତ୍ର ନିର୍ଯ୍ୟାତନା ଆଇନର ନୂତନ ନାମକରଣ । ପ୍ରଚଳିତ ଧାରାରେ ଅହିଂସାର ଅର୍ଥ ବେଦନାଯାତନା ଏହି ନିୟମ ଅନୁଯାୟୀ କାର୍ଯ୍ୟ କଲେ ବ୍ୟକ୍ତି ବିଶେଷ ତାହାର ଧର୍ମ, ତାର ଆତ୍ମାର ସୁରକ୍ଷା ନିମିତ୍ତ ଏକ ସମଗ୍ର ସାମ୍ରାଜ୍ୟର ଅନ୍ୟାୟ ଲବ୍ଧ ବଳକୁ ପ୍ରତିହତ କରିପାରେ ଏବଂ ଏପରି ଅନ୍ୟାୟଲବ୍ଧ ସାମ୍ରାଜ୍ୟର ମୂଳଦୁଆକୁ ଦୋହଲାଇ ଦେଇପାରେ ।

ଗାନ୍ଧିଜୀଙ୍କର ଅଧିକାଂଶ ଲେଖା-ସମ୍ପାଦକୀୟ ତାଙ୍କର ସାପ୍ତାହିକ ପତ୍ରିକାମାନଙ୍କ ପାଇଁ କ୍ଷୁଦ୍ର ପ୍ରବନ୍ଧ ଥିଲା । ସେ ଦେଖିଲେ ଯେ ସମ୍ବାଦପତ୍ର ଏକ ଅପରିହାର୍ଯ୍ୟ, ରାଜନୈତିକ ହାତବାରିସି । ୧୯୧୯ରେ ସେ ଇଂରାଜୀରେ 'ୟଙ୍ଗଇଣ୍ଡିଆ' ଓ ଗୁଜୁରାଟୀ ଭାଷାରେ 'ନବଜୀବନ' ସାପ୍ତାହିକ ପତ୍ରିକା ପ୍ରକାଶ କରି ସେଥିରେ ଲେଖିବାକୁ ଲାଗିଲେ । ୧୯୩୩ରେ 'ୟଙ୍ଗଇଣ୍ଡିଆ' ହେଲା 'ହରିଜନ' ଅସ୍ପୃଶ୍ୟମାନଙ୍କ ପାଇଁ ଗାନ୍ଧିଜୀଙ୍କର ପ୍ରଦତ୍ତ ନାମ । ସେ ତହିଁରେ ସମାଜ ସଂସ୍କାର ବିଷୟରେ ଅଧିକ ଧ୍ୟାନ ଦେଲେ । ତହିଁରେ ନାରୀ ଜାଗରଣ ଓ ନାରୀମୁକ୍ତି, ଶିକ୍ଷା ସଂସ୍କାର, ନିଶାନିବାରଣ, ଅସ୍ପୃଶ୍ୟତା ନିବାରଣ ଓ ଗ୍ରାମ୍ୟସ୍ୱରାଜ୍ୟ ଇତ୍ୟାଦି ଅନ୍ତର୍ଭୁକ୍ତ ।

ଗ୍ରାମ୍ୟ ସ୍ୱରାଜ୍ୟ ସମ୍ବନ୍ଧରେ 'ହରିଜନ'ର ୨୬-୭-୧୯୪୨ ସଂସ୍କରଣରେ ଗାନ୍ଧିଜୀ କହନ୍ତି-"ଗ୍ରାମସ୍ୱରାଜ୍ୟ ଏକ ସମ୍ପୂର୍ଣ୍ଣ ଗଣତନ୍ତ୍ର, ଏହା ମୋର ଧାରଣା । ଏହାର ସର୍ବପ୍ରଧାନ ଆବଶ୍ୟକତା ପାଇଁ ଏହା ପଡ଼ୋଶୀମାନଙ୍କ ଉପରେ ନିର୍ଭରଶୀଳ ନୁହେଁ । ମାତ୍ର ଯେଉଁସବୁ ବିଷୟରେ ନିର୍ଭରଶୀଳତା ଆବଶ୍ୟକ, ତାହା ପରସ୍ପର ପ୍ରତି ନିର୍ଭରଶୀଳତା । ବ୍ୟକ୍ତି ସ୍ୱାଧୀନତା ଉପରେ ପର୍ଯ୍ୟବସିତ ପୂର୍ଣ୍ଣ ଗଣତନ୍ତ୍ର ଏଠାରେ ବିରାଜମାନ ।

କଲମ ଓ ବାକ୍ ସ୍ୱାଧୀନତା ସମ୍ବନ୍ଧରେ ୨୯-୯-୧୯୪୦ରେ 'ହରିଜନ' ପତ୍ରିକାରେ ଗାନ୍ଧିଜୀ କହିଥିଲେ, "କଲମ ଓ ବାକ୍ ସ୍ୱାଧୀନତା ସ୍ୱରାଜ୍ୟର ମୂଳଦୁଆ । ଯଦି ମୂଳଦୁଆର ଗୋଟିଏ ପଥର ବିପଦାପନ୍ନ ହୁଏ, ତେବେ ସେହି ଗୋଟିଏ ପଥରର ସୁରକ୍ଷା ପାଇଁ ତୁମର ସମସ୍ତ ଶକ୍ତି ଖଟାଇବାକୁ ପଡ଼ିବ ।"

ନାରୀଜାଗରଣ ଓ ନାରୀମୁକ୍ତି ସମ୍ବନ୍ଧରେ ସେ କହନ୍ତି,-"ମୋର ଦୃଢ଼ ମତ ଯେ ଭାରତର ମୁକ୍ତି ଭାରତୀୟ ନାରୀ ଜାତିର ତ୍ୟାଗ ଓ ଜ୍ଞାନ ଉପରେ ନିର୍ଭର କରେ ।"

ଅସ୍ପୃଶ୍ୟତା ସମ୍ବନ୍ଧରେ-"ଅସ୍ପୃଶ୍ୟତା ବିରୁଦ୍ଧରେ ସଂଗ୍ରାମ ଏକ ଧାର୍ମିକ ସଂଗ୍ରାମ । ମାନବର ସମ୍ମାନର ପରିଚୟ ପାଇଁ ଏହା ଏକ ସଂଗ୍ରାମ । ହିନ୍ଦୁଧର୍ମର ସଂସ୍କାର ପାଇଁ ଏହା ଏକ ସଂଗ୍ରାମ । ରକ୍ଷଣଶୀଳତାର ପ୍ରୋଥିତ ଦୁର୍ଗ ବିରୁଦ୍ଧରେ ଏହା ଏକ ସଂଗ୍ରାମ ।"

ଶିକ୍ଷା ସମ୍ବନ୍ଧରେ-"ଯେଉଁ ଶିକ୍ଷା ଛାତ୍ରଛାତ୍ରୀ ଜୀବନର ପ୍ରତି କ୍ଷେତ୍ରରେ ସମସ୍ୟା ସମାଧାନ ଦିଗରେ ସକ୍ଷମ କରାଏ ତାହାହିଁ ମୂଲ୍ୟବାନ ଶିକ୍ଷା ।"

ନିଶା ନିବାରଣ ସମ୍ବନ୍ଧରେ—"ମଦ୍ୟପାନ ଅଭ୍ୟାସର ଶିକାର ହୋଇଥିବା ଗୋଟିଏ ଜାତିର ସମ୍ମୁଖରେ କେବଳ ଧ୍ୱଂସହିଁ ବିଦ୍ୟମାନ ।"

ପଣ୍ଡିତ ଜବାହରଲାଲ ନେହରୁ ଗାନ୍ଧିଜୀଙ୍କ ବିଷୟରେ କହନ୍ତି—"ତାଙ୍କର ଭାଷା ସର୍ବଦା ସରଳ ଓ ସଂଯତ । କଦାପି ଗୋଟିଏ ହେଲେବି, ଅପ୍ରାସଙ୍ଗିକ ବା ଅନାବଶ୍ୟକ ଶବ୍ଦ ସେ ବ୍ୟବହାର କରନ୍ତି ନାହିଁ ।"

ଶ୍ରୀ ଏନ୍.ବି.ସେନ୍ ତାଙ୍କ "ଉଇଟିସ୍ ଆଣ୍ଡ ଉଇଜ୍‌ଡମ୍ ଅଫ୍ ମହାତ୍ମା ଗାନ୍ଧି" ପୁସ୍ତକରେ କହନ୍ତି—"ଲେଖକଭାବରେ ସେ ଯେତିକି ଉଚ୍ଚକୋଟୀର ସେତିକି ସାବଲୀଳ । ଅର୍ଦ୍ଧଶତାବ୍ଦୀ ଧରି ତାଙ୍କ ରାଜନୈତିକ, ସାମାଜିକ, ଶିକ୍ଷା, ଧର୍ମ ଏବଂ ନୀତି ସମ୍ବନ୍ଧୀୟ ଲେଖାବଳୀ ଦେଶରେ ତଥା ବିଦେଶରେ ବହୁ ପ୍ରଶଂସା ଓ ଧ୍ୟାନ ଆକର୍ଷଣ କରିଥିଲା ।"

ପି: ଆର: ବି:

# ବଜ୍ର ପୁରୁଷ

ଶ୍ରୀ ଗୌରହରି ରାଉତ

ବଜ୍ର କଠୋର ଡାକରେ ଯାହାର
କମ୍ପିତ ହେଲା ଆକାଶ ବତାସ
କମ୍ପିତ ହେଲା ଗୋରା ଶାସକର କଳ,
ଧୂଳି ଧରଣୀରେ ବାରୁଦ ଖେଳାଇ
ଡାକିଲା ସେଦିନ—
"ରକ୍ତ ଦିଅରେ
ଦେବି ମୁଁ ତୁମକୁ
ମୁକ୍ତି—ମଶାଲ୍ ମୂଲ ।।"
ଡାକିଲା ସେଦିନ—
"ଚେଇଁ ଉଠ ଆରେ
ବନ୍ଦିନୀ ଆଜି କରୁଣ କଣ୍ଠେ
କାନ୍ଦେ ଭାରତ ମା',
ଉଠରୁ "ଆଜାଦ୍" ରଣହୁଙ୍କାରେ
ଲାଲ୍ ସକାଳେ
ବନ୍ଧୁକ ଆଜି ଜବାବ୍ ଦେବରେ
ବିଦେଶୀ—ବେପାରୀ ହଟିଯା 'ହଟିଯା' ।
ଘରେ ତୋ'ର ଆଜି ଶତ୍ରୁ କରୁଚି ନାଚ—
ମିଞ୍ଚ ପରିକା ସଜ୍ଜାର କରି
ପାଲିସ୍ କରି ତା' ହିଂସ୍ର ରୀତିରେ
ଦେଖୁଛୁ ଭାବିଛୁ ସ୍ୱାଧୀନ ହେବାର ବାଟ ?
କହ କେଉଁ ଜାତି ପାଇଛି ମୁକ୍ତି
ଧରି ସୁଧାରୀର ପଥ ??
ଶାର୍ଦ୍ଦୁଳ କିରେ ଛାଡ଼ି ଦେବ ତା'ରେ—
ମୃଗ ଯଦି ଧରେ କାକୁତି ମିନତି ନୀତି,
ରକ୍ତ ପିପାସୁ ଜାନୁଆର ଠାରେ
ଉଦୟ ହେବକି ଧର୍ମ—ଧାରଣା
ଏଥିପାଇଁ ଲୋଡ଼ା ଲାଠି ।।
କହରେ କହରେ—
ବିଦେଶୀ ଜୋତାର ଗୋଇଠା ମାଡ଼ ତୁ
କେତେଦିନ ସହୁଥିବୁ,
ରକ୍ତର ନଈ ବହିଯାଉ ପଛେ
ମଥାଟେକି ଶୁଳିଥିବୁ ।।
ଅନ୍ଧାର ତଳେ ବନ୍ଧା ହୋଇ ତୁ
କେତେ ଦିନ ପଡ଼ିଥିବୁ ??
କଦମ୍ କଦମ୍ ପକାଇ ଆ'ରେ
ଜଳିଉଠୁ ଏବେ ମୁକ୍ତିର ଶେଷ ନିଆଁ,
ଗୁଳରେ ବାହିନୀ "ଆଜାଦ୍ ହିନ୍ଦ୍"
ଫୁଟିବ କମାଣ ଦିଲ୍ଲୀ ଦୁଆରେ
"ବନ୍ଦେ ଭାରତ ମା" ।
ଅଗ୍ନିଗର୍ଭା ଡାକରେ ତାହାର
ଉଠିଲା ଜନତା ମୁକ୍ତିମଶାଲ ଧରି,
ବିଦ୍ରୋହ ନିଆଁ ଖେଳିଲା ଆକାଶେ,
ପାଣି ପବନରେ
ଲେଲିହାନ୍ ଶିଖା ପରି ।।
ହିଟ୍‌ଲର୍‌ଠାରୁ ମାଗିଲା ସୈନ୍ୟ ବଳ—
ଶଂକିତ ହେଲା ଗୋରା ଶଇତାନ୍
ବିଦେଶୀ ବେପାରୀ ମୁଣ୍ଡେ ପଡ଼ିଲା ମାଡ଼
ହଟିଗଲେ ଶେଷେ ଭାରତ ଭୂଇଁରୁ
ଆସିଥିଲେ ଯେତେ ପାରିହୋଇ ପାରାବାର ।।

କ୍ୱାର୍ଟର୍ସ ନଂ—୨୪/୩,
ୟୁନିଟ୍—୯ (ଫ୍ଲାଟ୍), 'ଈ' ଟାଇପ୍,
ଭୁବନେଶ୍ୱର

# ଜାତୀୟ ସ୍ୱାଭିମାନୀ ଗଣକବି ବୈଷ୍ଣବ ପାଣି

ଡକ୍ଟର ନିରଞ୍ଜନ ସାହୁ

ଓଡ଼ିଆ ଭାଷା–ସାହିତ୍ୟ ଓ ସମାଜ ଜୀବନ ଯେତେବେଳେ ବଞ୍ଚିବା ପାଇଁ ସଂଗ୍ରାମ କରୁଥିଲା, କରାଳ ନ'ଅଙ୍କ ଦୁର୍ଭିକ୍ଷର ଛାଇ ଯେତେବେଳେ ଓଡ଼ିଆ ଜନପ୍ରାଣକୁ କବଳିତ କରିଥିଲା, ମାତୃଭାଷା ଓ ମାତୃଭୂମିର ଏହିପରି ଏକ ଦୁର୍ଦ୍ଦିନ ସମୟରେ ନିର୍ଭୀକ ଓ କଳାର ଫସଲ ସ୍ରଷ୍ଟା ଗଣକବି ବୈଷ୍ଣବ ପାଣିଙ୍କର ଜନ୍ମ । ଦୁଇ ବିଶ୍ୱଯୁଦ୍ଧ ଓ ମହାତ୍ମା ଗାନ୍ଧୀଙ୍କ ଡାକରାରେ ଭାରତର ବହୁବାଞ୍ଛିତ ସ୍ୱାଧୀନତା ସଂଗ୍ରାମ ସମକାଳୀନ ସମୟ ତାଙ୍କର ଥିଲା କର୍ମମୟ ଓ କଳା କୋଣାର୍କ ସର୍ଜନାର ସମୟ । ୧୮୮୨ ମସିହାର ଶାରଦୀୟ ଚନ୍ଦ୍ର ଚକୋରିତ ରଜନୀ କୁମାରପୂର୍ଣ୍ଣିମାରେ ଜନ୍ମନେଇ ଓଡ଼ିଆ ଯାତ୍ରାକୁ ଶିଳ୍ପବିଭବ ମଣ୍ଡିତ କରି ୧୯୫୬ ମସିହାର ବୈଶାଖ ଅମାବାସ୍ୟାରେ ତାଙ୍କର ଜୀବନ ଦୀପ ଲିଭିଯାଇଥିଲା । ଶତାଧିକ ଗୀତାଭିନୟ ଓ ଗୀତିନାଟ୍ୟ ସୃଷ୍ଟିକରି ସେ ହୋଇଛନ୍ତି ଯୁଗସ୍ରଷ୍ଟା । ଯାତ୍ରା ସାହିତ୍ୟରେ ସଂସ୍କାର ଆଣିବା ପାଇଁ ତାଙ୍କର ଆପ୍ରାଣ ଉଦ୍ୟମ ଅବିସ୍ମରଣୀୟ । ସେ କପଟତି କବି ନୁହନ୍ତି, ସେ ଥିଲେ ସ୍ୱଭାବ କବି । ସମୟୋପଯୋଗୀ କଳାକାର ଓ ସଚେତନ ସ୍ରଷ୍ଟା ।

କଟକ ଜିଲ୍ଲା ଅନ୍ତର୍ଗତ ମାହାଙ୍ଗାଥାନାର କୋଠପଦାଠାରେ ପିତା ସୁଦର୍ଶନ ପାଣି ଓ ମାତା ଶୁଦ୍ଧଦେବୀଙ୍କ କୋଳରେ ସେ ଜନ୍ମ ଗ୍ରହଣ କରିଥିଲେ । ଶିଶୁ ଅବସ୍ଥାରୁ ରୋଗାକ୍ରାନ୍ତ ଥିବାରୁ ପିତାମାତା ବଡଠାକୁରଙ୍କ ବଡ଼ଛତା ତଳେ ତାଙ୍କୁ ବୈଷ୍ଣବ କରିଦେଇଥିଲେ । ସେ ହେଲେ ପ୍ରଭୁଙ୍କର ବରପୁତ୍ର । ପ୍ରଭୁଙ୍କ ଅପାର କରୁଣାରୁ ସେ ରୋଗମୁକ୍ତ ହୋଇ ବୈଷ୍ଣବ ନାମରେ ପରିଚିତ ହେଲେ । ଦୁଃଖ ଓ ଦାରିଦ୍ର୍ୟ ତାଙ୍କର ଥିଲା ଚିର ସହଚର । ଅନ୍ନ କଷ୍ଟରୁ ରକ୍ଷାପାଇଁ ସେ କୋଠପଦା ମହନ୍ତଙ୍କର ଫୁଲତୋଳା ଓ ଗୋରକ୍ଷକ ଭାବରେ ନିଯୁକ୍ତ ହୁଅନ୍ତି । ମହନ୍ତଙ୍କ ଯାତ୍ରାଦଳ ପ୍ରତି ଆକୃଷ୍ଟ ହେଲେ ଓ ନୃତ୍ୟଗୁରୁ ଶିବରାମ ସିଂହଙ୍କ ପାଖରୁ ନୃତ୍ୟ ଶିକ୍ଷାକରି ଗୋଟିପୁଅ ନାଚିଲେ ଓ ପରେ ପରେ ଗୃହଶିକ୍ଷକ ପାଲାଗାହାଣ ଓ ଓସ୍ତାଦୀ ଜୀବନ କଟାଇଲେ । ୧୯ ବର୍ଷ ବୟସରେ ଜୟରାମ ପଣ୍ଡାଙ୍କ କନ୍ୟାକୁ ବିବାହ କଲେ । ପରେ ପରେ ରଜକିନୀ 'ହରି' ପାଣି ଗ୍ରହଣ କଲେ । ଚଣ୍ଡୀଦାସଙ୍କ 'ରାମୀ' ପରି 'ହରି' ହେଲା ବୈଷ୍ଣବ ପାଣିଙ୍କ କଳା ଫସଲର ପ୍ରେରଣା ଦାୟିନୀ । ପଙ୍କରୁ ପଙ୍କଜର ଜନ୍ମପରି ଜୀବନର ପାପପଙ୍କରୁ ସେ ଫୁଟାଇଛନ୍ତି ସୃଜନଶୀଳ ସାହିତ୍ୟର ପଙ୍କଜ । କଳାର କାଉଁରୀ ସ୍ପର୍ଶ, ସଙ୍ଗୀତର ମାଧୁର୍ଯ୍ୟ, କଳାର ଲାବଣ୍ୟମୟ ଓ ସୌରଭଯୁକ୍ତ ଶତଦଳ ।

ଗଣକବି ବୈଷ୍ଣବ ପାଣି ଥିଲେ ଅସାଧାରଣ ପ୍ରତିଭା । ଗୀତାଭିନୟ ଦ୍ୱାରା ପୁର ପଲ୍ଲୀର ଜନତାଙ୍କୁ ସେ ମନ୍ତ୍ରମୁଗ୍ଧ କରିଥିଲେ । ତାଙ୍କର ଗୀତିନାଟ୍ୟ ପଲ୍ଲୀ ସମାଜର ଏକଦା ମନୋରଞ୍ଜନ କରୁଥିଲା । ତାହା କ୍ରମେ ଶିକ୍ଷିତ ବିଦଗ୍ଧ ମଣ୍ଡଳୀରେ ଆଜି ନୂତନ ମର୍ଯ୍ୟାଦା ଲାଭ କରିଛି । ସେକ୍ସପିୟର ଓ ସାରଳା ଦାସଙ୍କ ପରି କଥିତ ଭାଷା ଓ ଗ୍ରାମ୍ୟ ଭଙ୍ଗୀର କଳା ପ୍ରୟୋଗ କରି ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟର ପୃଷ୍ଠଭୂମିରେ ବୈଷ୍ଣବ ପାଣି ସ୍ୱୀକୃତ ଓ ଗଣାଦୃତ ହୋଇଛନ୍ତି । ତାଙ୍କ ସମ୍ପର୍କରେ ସମାଲୋଚକ ସୁରେନ୍ଦ୍ରମହାନ୍ତି କହିଛନ୍ତି–"ବୈଷ୍ଣବ ପାଣିଙ୍କ ଜୀବନ ଅତିବାହିତ ହୋଇଥିଲା କର୍ଦ୍ଦମ ପଙ୍କ ମଧ୍ୟରେ । କିନ୍ତୁ ତାଙ୍କ କବିତ୍ୱର ପଙ୍କଜ ଆମ୍ଭମାନଙ୍କର ରସଚେତନାକୁ ଆଜି ସୁଦ୍ଧା ସୁରଭିତ କରି ରଖିଅଛି । ତାଙ୍କ ସ୍ପର୍ଶରେ ପୁଣି ପଙ୍କ ସୁଦ୍ଧା ଗୋଳା ଚନ୍ଦନରେ ପରିଣତ ହୋଇଅଛି ।"

ଗଣକବି ବୈଷ୍ଣବ ପାଣି ଶତାଧିକ ଗୀତାଭିନୟ ସୃଷ୍ଟି କରିଛନ୍ତି । ଗୀତିନାଟ୍ୟ, ସୁଆଙ୍ଗ, ଫାର୍ସ ଆଦି ସୃଷ୍ଟିକରି ଓଡ଼ିଆ ଲୋକନାଟ୍ୟ ପରମ୍ପରାକୁ ସମୃଦ୍ଧ ଓ ପ୍ରାଣବନ୍ତ କରିଛନ୍ତି । ଓଡ଼ିଆ ଯାତ୍ରାକୁ ନୂତନରୂପ ଓ ନବଜୀବନ ସେ ପ୍ରଦାନ କରିଛନ୍ତି । ଗଣଭାଷାକୁ ନାଟକର ଭାଷାରୂପେ ଗ୍ରହଣ କରିବା ବୈଷ୍ଣବ ପାଣିଙ୍କ କୃତିତ୍ୱ । ପୁରାଣକୁ ଆଶ୍ରୟକରି ଗୀତିନାଟ୍ୟ ରଚିତ ହେଲେ ମଧ୍ୟ ସେ ସୃଷ୍ଟିକୁ ବାସ୍ତବାଭିମୁଖୀ କରାଇଛନ୍ତି । ମେଘନାଦ ବଧ, ରାବଣ ବଧ, ରଙ୍ଗସଭା, ବ୍ରଜଲୀଳା, ଧ୍ରୁବଚରିତ, ପ୍ରହ୍ଲାଦ ଚରିତ, କୀଚକ ବଧ, ନଳଦମୟନ୍ତୀ, କାର୍ତ୍ତବୀର୍ଯ୍ୟ ସଂହାର, ଗଙ୍ଗାଭଗୀରଥ, ନାଚକେଳି, ଶକୁନ୍ତଳା, ବେଣୀବନ୍ଧନ, ଗୋଧନ ହରଣ, ଇଚ୍ଛାବତୀ ହରଣ, କଂଶବଧ, ଦକ୍ଷଯଜ୍ଞ, ଭକ୍ତ ସୁଦାମା, ଭୀଷ୍ମଶରଶଯ୍ୟା ପ୍ରଭୃତି ତାଙ୍କର ପୌରାଣିକ ଗୀତାଭିନୟ । ପୁରାଣ ବିଷୟବସ୍ତୁକୁ ସମକାଳୀନ ସମାଜ ଜୀବନ ସହିତ ମିଶାଇ ଏକ ଚିରନ୍ତନ ମାନବିକ ଭାବବୋଧ ସେ ସୃଷ୍ଟି କରିଛନ୍ତି । ପ୍ରତ୍ୟେକଟି ସୃଷ୍ଟିରେ ରହିଛି ଚିରନ୍ତନ ସାହିତ୍ୟିକ ମୂଲ୍ୟ । କଳାତ୍ମକ ମୂଲ୍ୟ ସହିତ ହାସ୍ୟରସ ସୃଷ୍ଟି ତାଙ୍କର ଅଭିନବ ।

ସେ ଥିଲେ ସମାଜ ସଂସ୍କାରକ ସ୍ରଷ୍ଟା । ଗୀତାଭିନୟ ଭିତରେ ନୂତନ ସଂସ୍କାରର ସ୍ୱର ଉଦ୍ଯୋଜନ କରିଛନ୍ତି । ପଦ୍ୟ ସହିତ ଗଦ୍ୟ ସଂଳାପର ସଂଯୋଜନା କରିଛନ୍ତି । 'ଦୂତ' କଣ୍ଠରେ ଭରିଛନ୍ତି ସାମାଜିକ ଚେତନା । ସବୁକଥା ସେ ନୂତନ କରି କହିଛନ୍ତି ।

ନୂତନ ଶୈଳୀ ପ୍ରଦାନ କଲେ। ସରଳ ଓ ରୁଚିଶୀଳ କରି ପରିବେଷଣ କଲେ। ତାଙ୍କର ଲେଖନୀ ସମାଜର ବିଭିନ୍ନ ଦିଗକୁ ଛୁଇଁଗଲା। 'ମହିଷାସୁର ବଧ' ଗୀତାଭିନୟରେ ଆଧୁନିକ ସମାଜର ଖୁଦିରି ଜୀବନ ପ୍ରତି ତୀର୍ଯ୍ୟକ ଦୃଷ୍ଟିପାତ କଲେ-

"ରାଜା ଘରେ ଖୁଦିରି ଖଟି
ମାସକରେ ଜମା ବିଦିନ ଛୁଟି
ପର ମୁହଁ ଚାହିଁ ଭାଗିନା ମୋହର
ଦରଖରେ ଦିନ ନେଉଛି କାଟି"

"ଦ୍ରୌପଦୀ ସ୍ୱୟଂବର", "ଅର୍ଜୁନ ଲାଖବିନ୍ଧା" ଗୀତାଭିନୟରେ ଖୁଦିରି ଜୀବନ ପ୍ରତି ବ୍ୟଙ୍ଗାତ୍ମକ ଦୃଷ୍ଟି କବି ନିକ୍ଷେପ କରିଛନ୍ତି। ଅନ୍ୟାନ୍ୟ ଗୀତାଭିନୟରେ ଆଧୁନିକ ସମାଜଜୀବନର ଦରଦାମ ବୃଦ୍ଧି, ବିଲାତି ପୋଷାକ ପିନ୍ଧା, ଜାତିର ଅବସ୍ଥା, ମଦ୍ୟପାନର କୁପରିଣାମ, ସହରୀ ବେଶ୍ୟା ଜୀବନ, ଜୀବନର ବିବିଧ ଅସହାୟତା ଇଂରେଜ ସରକାରଙ୍କର ଅତ୍ୟାଚାର, ରାଜା ଓ ଜମିଦାରଙ୍କ ଶୋଷଣ, ସ୍ୱାଧୀନତା ସଂଗ୍ରାମ ଚିତ୍ର, ଜାତୀୟତାର ଭାବତରଙ୍ଗ, ଛୁଆଁ ଅଛୁଆଁ ଭେଦଭାବ, ଭାଷାପ୍ରୀତି, ଦେଶପ୍ରୀତି ଇତ୍ୟାଦି ସାମାଜିକ ଚିତ୍ର ଦୂତ, ରଜକରଜକୀ, ଗଉଡ଼-ଗଉଡୁଣୀ, ଶବର ଶବରୁଣୀ ଆଦି ଚରିତ୍ର ମାଧ୍ୟମରେ ପ୍ରଦାନ କରିଛନ୍ତି। କବି ମୁକ୍ତିସଂଗ୍ରାମର କଥା କହିଛନ୍ତି-

ଦେଖ ଦେଖ ଭାଇ ଭାଙ୍ଗିଲାଣି ଆଜି
ଗୋରାଙ୍କ ଜିଏଲ ଖାନାରେ
କାଲିର କାଇଦା ନାହିଁ ଆଜି ଆଉ
ପଶନ୍ତି ସ୍ୱରାଜ ସେନାହେ।

ସେ ପ୍ରଥମ କବି, ଯିଏକି ତତ୍କାଳୀନ ବ୍ରିଟିଶ୍ ଶାସନ ସମୟରେ କାରାଗାରକୁ ଜଗନ୍ନାଥଙ୍କ ମନ୍ଦିର ସହିତ ତୁଳନା କରିଛନ୍ତି। ଦେଶପାଇଁ କାରାବରଣ କଲେ ନିନ୍ଦନୀୟ ନୁହେଁ, ତାହା ଗୌରବମୟ ବୋଲି କହିଛନ୍ତି। ଏହା କବିଙ୍କର ସଂଗ୍ରାମୀମାନଙ୍କ ପାଇଁ ମୁଗ୍ଧ ଅଭିନନ୍ଦନ।

ପାଣିକବି ଜଣେ ଆଧ୍ୟାତ୍ମବାଦୀ ସ୍ରଷ୍ଟା। ନୈତିକତା ଉପରେ ସେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି। 'ପ୍ରହ୍ଲାଦ ଚରିତ' ଗୀତିନାଟ୍ୟରେ ତାଙ୍କର ଭକ୍ତିପ୍ରାଣତା ଓ ବିଷ୍ଣୁପ୍ରେମର ପରିଚୟମିଳେ।

"ଚିହ୍ନାଇ ଦେଉଛି ପିତା ପଚାରିଲ ଯେଉଁ କଥା
ଚାହିଁଥା ତୁସେ, ନାହିଁତା ଜାତିପତି ନାହିଁତା ବାଡ଼ିବୁଡ଼ି
ଭ୍ରମର ପରାଏ ଭ୍ରମି ହୃଦ ପଦ୍ମେ ମଧୁବ୍ରତେ।"

ତାଙ୍କର ଗୀତାଭିନୟରେ କାବ୍ୟରସ ସହିତ ନାଟକୀୟ ରସର ହୋଇଛି ମଧୁର ସମାବେଶ। ସେ ବିବିଧ ରସର ଅବତାରଣା କରିଛନ୍ତି। ତାହା କଳାତ୍ମକ ଓ ହୃଦୟସ୍ପର୍ଶୀ। ଶବ୍ଦ ସଂଯୋଜନା ହୋଇଛି ପ୍ରାଣସ୍ପର୍ଶୀ। ବିଶେଷକରି ଭକ୍ତିରସ, ବାତ୍ସଲ୍ୟରସ, ବୀରରସ, କରୁଣରସ ଓ ଶୃଙ୍ଗାରରସ ଗଣାନୁମୋଦୀ ହୋଇଛି। ବାତ୍ସଲ୍ୟରସ ପ୍ରାଣସ୍ପର୍ଶୀ ହୋଇଛି :-

"ମାଆ ମାଆ ଡାକ ଆଉ କାହାଠାରୁ ଶୁଣିବିରେ
ରଷି ଯାଉଥିଲେ ତାକୁ କୋଳକରି ଆଣିବିରେ।"

ଭକ୍ତିରସ ଓଡ଼ିଆ ଗୀତାଭିନୟର ମୁଖ୍ୟରସ। ପାଣିକବି ତାଙ୍କ ଗୀତାଭିନୟରେ ଭକ୍ତିରସର ସ୍ୱର୍ଗୀୟ ଉଲ୍ଲାସ ସୃଷ୍ଟି କରିଛନ୍ତି। ସେ ରଜକ ରଜକିନୀ, ଦୂତ ଓ ଅନ୍ୟାନ୍ୟ ଗ୍ରାମ୍ୟଚରିତ ମାଧ୍ୟମରେ ବିମଳ ହାସ୍ୟର କଲ୍ଲୋଳ ସୃଷ୍ଟି କରିଛନ୍ତି।

ଓଡ଼ିଆ ସାହିତ୍ୟରେ ବହୁ ଗୀତାଭିନୟର ସ୍ରଷ୍ଟା ରହିଛନ୍ତି। କବିଚନ୍ଦ୍ର ରଘୁନାଥ ପରିଚ୍ଛା, ଜଗନ୍ନାଥ ପାଣି, ଗୋପାଳଦାସ, ଗଣକବି ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, ମୋହନଗୋସ୍ୱାମୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ବାବାଜୀ ବୈଷ୍ଣବ ଚରଣ ଦାସ, କବିମଣ୍ଡଳ କୃଷ୍ଣପ୍ରସାଦବସୁ ପ୍ରମୁଖ। ଜଗନ୍ନାଥ ପାଣି ଗୀତାଭିନୟ ସୃଷ୍ଟିରେ ପ୍ରଥମ। କିନ୍ତୁ ବୈଷ୍ଣବ ପାଣି ସେଥିରେ ନୂତନଶୈଳୀ ଓ ସଂସ୍କାର ଆଣି ଗଣାଭିମୁଖୀ କରାଇଲେ। ପଦ୍ୟ ଓ ଗଦ୍ୟ ସଂଳାପ, ସାମାଜିକ ଆବେଦନ, ସ୍ୱାଭାବିକତା, ଓଡ଼ିଶୀ ଓ ମଧ୍ୟଯୁଗୀୟ ବିଦଗ୍ଧ କବିମାନଙ୍କର ଛନ୍ଦକୁ ଗ୍ରହଣ କରି ସେ ସଙ୍ଗୀତ ସୃଷ୍ଟି କରିଛନ୍ତି। ସଙ୍ଗୀତକୁ ଛାଡ଼ି ଗୀତାଭିନୟ ବା ଗୀତିନାଟ୍ୟ ବୈଚିତ୍ର୍ୟହୀନ। ସଙ୍ଗୀତ ମଧୁସ୍ପର୍ଶ ଦିଏ। ତେଣୁ ଓଡ଼ିଆ ଗୀତାଭିନୟ ସଙ୍ଗୀତ ବହୁଳ ଓ ଗୀତିମୟ ସଂଳାପ ପ୍ରଧାନ। ଜଗନ୍ନାଥ ପାଣି ଗୀତାଭିନୟରେ ଛାନ୍ଦକୁ ଗ୍ରହଣ କରିଛନ୍ତି। ଗୋପାଳଦାସ ସଂଗୀତକୁ ଜନଜୀବନ ସହିତ ସମ୍ପୃକ୍ତ କରିବାକୁ ପ୍ରାଥମିକ ଉଦ୍ୟମ କରିଛନ୍ତି। ତେବେ ତାଙ୍କର ଗୀତାଭିନୟ ପାରମ୍ପରିକ ସଙ୍ଗୀତ ପ୍ରଧାନ। ପ୍ରାଚୀନ ସଙ୍ଗୀତର ଛାନ୍ଦ ଓ ରାଗରାଗିଣୀକୁ ଗ୍ରହଣ କରିଛନ୍ତି। ଗଣକବି ବୈଷ୍ଣବ ପାଣି ଗୀତାଭିନୟରେ ଓଡ଼ିଶୀ ସଙ୍ଗୀତକୁ ନୂତନରୂପ ପ୍ରଦାନ କରିଛନ୍ତି। ଗୀତାଭିନୟକୁ ଜନଜୀବନ ସହିତ ସମ୍ପୃକ୍ତ କରାଇଛନ୍ତି। ପାରମ୍ପରିକ ସଙ୍ଗୀତକୁ ଗ୍ରହଣ କରି ନୂତନ ସଙ୍ଗୀତର ରୂପ ପ୍ରଦାନ କରିଛନ୍ତି। ଲୋକ ସଙ୍ଗୀତ ଓ ଓଡ଼ିଶୀ ସଙ୍ଗୀତର ଅପୂର୍ବ ସମନ୍ୱୟ ସାଧିତ ହୋଇଛି। ଶବ୍ଦ ସଂଯୋଜନାରେ ଫୁଟିଛି ଚମତ୍କାରିତା ଓ ସ୍ୱାଭାବିକତା। ପରିଚିତ କଥିତ ଶବ୍ଦକୁ ନେଇ ମାଧୁର୍ଯ୍ୟ ସୃଷ୍ଟି କରିଛନ୍ତି। ଆନୁପ୍ରାସିକ ଧ୍ୱନିରେ ସଙ୍ଗୀତଗୁଡ଼ିକ ହୋଇଛି ଲଳିତ ଓ ମଧୁର। ଏହାବ୍ୟତୀତ ମଧ୍ୟଯୁଗୀୟ କବିମାନଙ୍କର ଛନ୍ଦକୁ ଗ୍ରହଣ କରି ବିଦଗ୍ଧ କାବ୍ୟିକତା ସୃଷ୍ଟି କରିବା ସହିତ ସେ କୀର୍ତ୍ତନ, ରାସ, ଭାଗବତ, ଦ୍ୱିପଦ ଆଦି ଛନ୍ଦକୁ ଗ୍ରହଣ କରିଛନ୍ତି। ରସକୁଲ୍ୟା, ରାମକେରୀ, ଚକ୍ରକେଳି, ଚଉଦ ଅକ୍ଷରୀ, ଚୁଡ଼ା, ବାଉଲ, ଝୁମ୍ପା, ବଚନିକା, ଓଗାଲ ପ୍ରଭୃତି ବ୍ୟବହୃତ କରିଛନ୍ତି। ପ୍ରତ୍ୟେକଟି ସଙ୍ଗୀତ ହୋଇଛି ଚିତ୍ତ ଉଲ୍ଲାସକାରୀ। ଏହା ତାଙ୍କ ଅନନ୍ୟ ପ୍ରତିଭାର ନିଦର୍ଶନ।

---

ଅଧ୍ୟାପକ ଓଡ଼ିଆ ବିଭାଗ,
ମାହାଙ୍ଗା ପୁଷ୍ପଗିରି ମହାବିଦ୍ୟାଳୟ,
ଏରକଣା, ମାହାଙ୍ଗା, କଟକ

# ଦାର୍ଶନିକ ଡକ୍ଟର ରାଧାକୃଷ୍ଣନ

ତାମିଲନାଡୁ ତିରୁତାନି ସହରରେ ଏକ ମଧ୍ୟବିତ୍ତ ପରିବାରରେ ୧୮୮୮ ସେପ୍ଟେମ୍ବର ମାସ ୫ ତାରିଖରେ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ ଜନ୍ମ ଗ୍ରହଣ କରିଥିଲେ । କୁହାଯାଏ ଯେ ତାଙ୍କ ପିତା ଇଂରାଜୀ ଶିକ୍ଷା ନକରି ପୁତ୍ର ପୁରୋହିତ ହେଉ ବୋଲି



ଚାହୁଁଥିଲେ । ସେ ତିରୁତାନି ଏବଂ ପରେ ପରେ ଭେଲୋରର ବିଦ୍ୟାଳୟରେ ବିଦ୍ୟାଧ୍ୟୟନ କରିଥିଲେ । ପରେ ସେ ମାନ୍ଦ୍ରାଜର ଖ୍ରୀଷ୍ଟିଆନ କଲେଜରେ ଯୋଗ ଦେଇ ଦର୍ଶନ ଶାସ୍ତ୍ର ଅଧ୍ୟୟନ କଲେ । ଆକସ୍ମିକ ଭାବରେ ଦର୍ଶନ ଶିକ୍ଷା ପ୍ରତି ଆକୃଷ୍ଟ ହୋଇ ରାଧାକୃଷ୍ଣନ ତାଙ୍କର ଆତ୍ମବିଶ୍ୱାସ ନିଷ୍ଠା ଏବଂ ବଳିଷ୍ଠ ଅଧ୍ୟବସାୟ ଦ୍ୱାରା ଦାର୍ଶନିକ ହୋଇଗଲେ ।

## ଦର୍ଶନ ଏବଂ ଜୀବନ

ବେଦାନ୍ତର ନୀତିବୋଧ ଏବଂ ଏହାର ବସ୍ତୁଗତ ପୃଷ୍ଠଭୂମି ହେଉଛି ତାଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଏମ୍. ଏ. ଉପାଧିର ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇଥିବା ଏହି ଶୋଧ–ପ୍ରବନ୍ଧ ୧୯୦୮ରେ ପ୍ରକାଶିତ ହେବାପରେ ନିଃସନ୍ଦେହରେ ଜଣେ ସୁଦକ୍ଷ ମହାନ ଦାର୍ଶନିକ ଭାବରେ ତାଙ୍କର ଖ୍ୟାତି ତତ୍‌କ୍ଷଣାତ୍ ସର୍ବତ୍ର ସ୍ୱୀକୃତ ହୋଇଗଲା । ତାଙ୍କର ପରବର୍ତ୍ତୀ କୃତିସବୁ ସମ୍ପୃକ୍ତ କ୍ଷେତ୍ରରେ ବୈଶିଷ୍ଟ୍ୟର ଅଧିକାରୀ ହେଲା । ସୂକ୍ଷ୍ମ ସ୍ଥୂଳ ଦାର୍ଶନିକ–ଚିନ୍ତନକୁ ବୋଧଗାମୀ ଭାଷାରେ ପ୍ରକାଶ କରିବା ଅତି କଷ୍ଟସାଧ୍ୟ ବୋଲି ବିଚାର କରାଯାଏ । କିନ୍ତୁ ଅନାୟାସରେ ଏବଂ ସରଳ ଭାଷାରେ ଏପରି କରି ପାରିବା କ୍ଷମତା ମୁଷ୍ଟିମେୟଙ୍କ ମଧ୍ୟରେ ଡକ୍ଟର ରାଧାକୃଷ୍ଣନ୍ ଥିଲେ ଅନ୍ୟତମ ।

ଜୀବନକୁ ବୋଧଗମ୍ୟ କରିବା ପାଇଁ ଦର୍ଶନ ହେଉଛି ଏକ ମାର୍ଗ ଏବଂ ତାଙ୍କର ଭାରତୀୟ ଦର୍ଶନର ଅଧ୍ୟୟନ ସଂସ୍କୃତିର ଚିକିତ୍ସା ପଦ୍ଧତି ଭାବରେ କାର୍ଯ୍ୟ କରିଛି । ପାଶ୍ଚାତ୍ୟ ଭାଷାରେ ଭାରତୀୟ ଚିନ୍ତନକୁ ବ୍ୟାଖ୍ୟା କରି ଏବଂ ସେ ସବୁ ଯୁକ୍ତି ଓ ତର୍କସମ୍ମତ ବୋଲି ପ୍ରମାଣ କରି ସେ ବିଦେଶୀ ଶାସନରେ ସୃଷ୍ଟି ହୋଇଥିବା ହୀନମନ୍ୟତାରେ ଜର୍ଜରିତ ଭାରତବାସୀଙ୍କ ମଧ୍ୟରେ ଆତ୍ମୋପଲବ୍ଧି ମୂଳକ ନୂତନ ଚେତନା ଜାଗ୍ରତ କରିବାରେ ସମର୍ଥ ହୋଇଥିଲେ । କିନ୍ତୁ ସେ ସ୍ପଷ୍ଟଭାବରେ ଦେଶବାସୀଙ୍କୁ ଜଣାଇ ଦେଇଥିଲେ ଯେ ସେମାନଙ୍କର ଦୀର୍ଘ ଏବଂ ସମୃଦ୍ଧ ପରମ୍ପରା ଅବରୁଦ୍ଧ ହୋଇଯାଇଛି ଏବଂ ସେଥିପାଇଁ ଆହୁରି ବିବର୍ତ୍ତନ ଆବଶ୍ୟକ ବୋଲି ସେ ସବୁ ଦୁର୍ନୀତିମୂଳକ ତଥା ଘୃଣା ପ୍ରଥା ପରିହାର କରିବାକୁ ପରାମର୍ଶ ଦେଇଥିଲେ ।

## ସାମାଜିକ ଅଙ୍ଗୀକାର

ଡକ୍ଟର ରାଧାକୃଷ୍ଣନ ବିଦ୍ୟାଧ୍ୟୟନର ସଂକୀର୍ଣ୍ଣ ସୀମା ଅତିକ୍ରମ କରି ସମସାମୟିକତାର ପରିପ୍ରେକ୍ଷୀରେ ରାଜନୈତିକ ତଥା ସାମାଜିକ ବିକାଶ କ୍ଷେତ୍ରରେ ତାଙ୍କର ଦାର୍ଶନିକ ଏବଂ ଆଧ୍ୟାତ୍ମିକ ଜ୍ଞାନକୁ ବିନିଯୋଗ କରିବାକୁ ଚାହିଁଥିଲେ ।

ସେ ବିଶ୍ୱାସ କରୁଥିଲେ ଯେ ଭାରତରେ ଦାର୍ଶନିକର କର୍ତ୍ତବ୍ୟ ହେଉଛି ଅତୀତ ସହିତ ସମ୍ପର୍କ ରଖି ଭବିଷ୍ୟତ ଅଭିମୁଖୀ ଦୃଷ୍ଟି ସମ୍ପ୍ରସାରଣ । ସମାଜ ପ୍ରତି ଅଙ୍ଗୀକାରବଦ୍ଧତା ତାଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଲେଖାବଳୀରେ ବୀରତ୍ୱର ସ୍ୱର, ଏପରିକି ପ୍ରାଚୀନ ଶାସ୍ତ୍ରଗୁଡ଼ିକର ଆଧୁନିକ ଦୃଷ୍ଟିରୁ ବ୍ୟାଖ୍ୟା ଏବଂ ଉପନିବେଶବାଦୀ ଅବକ୍ଷୟମୂଳକ ରୂପ ପ୍ରତି ତାଙ୍କର ବୌଦ୍ଧିକ ପ୍ରତିରୋଧ ଜନମାନସରେ ଡକ୍ଟର ରାଧାକୃଷ୍ଣନଙ୍କର ବଳିଷ୍ଠ ଭାବମୂର୍ତ୍ତି ଗଠନ କରିଥିଲା । ସାଧାରଣ

ରାଜନେତା ଏବଂ ବିଦ୍ୟାବିତ୍‌ମାନଙ୍କଠାରୁ ସେ ସ୍ୱତ   ବୋଲି ବାରି ହୋଇ ପଡୁଥିଲେ ।

## ପ୍ରେରଣାଦାୟକ ଶିକ୍ଷକ

ସାଂସାରିକ ବ୍ୟାପାରରେ ନିର୍ଲିପ୍ତ ଜଣେ ବଳିଷ୍ଠ ଏବଂ ନିଷ୍ପାପର ବିଦ୍ୱାନ ହେବା ପରିବର୍ତ୍ତେ ଡକ୍ଟର ରାଧାକୃଷ୍ଣନ୍ ଜଣେ ଅତି ଦରଦୀ ମଣିଷ ଥିଲେ । ମାଡ୍ରାସ୍ ପ୍ରେସିଡେନ୍‌ସୀ କଲେଜର ପ୍ରାଧ୍ୟାପକ କାଳୀନ ତାଙ୍କ ଆଦ୍ୟ ଜୀବନରୁ ସେ ଜଣେ ଅତି ଛାତ୍ରପ୍ରିୟ ଏବଂ ପ୍ରଭାବଶାଳୀ ଶିକ୍ଷକ ଥିଲେ । ୩୦ ବର୍ଷରୁ କମ୍ ବୟସରେ ତାଙ୍କୁ କଲିକତା ବିଶ୍ୱବିଦ୍ୟାଳୟ ପ୍ରାଧ୍ୟାପକ ପଦ ପାଇଁ ଆମ ଣ କରାଯାଇଥିଲା । ସେ ୧୯୩୧ରୁ ୧୯୩୬ ଯାଏ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ୧୯୩୯ରେ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ନିଯୁକ୍ତି ହେଲେ । ଦୁଇବର୍ଷ ପରେ ସେ ବନାରସରେ ଭାରତୀୟ ସଂସ୍କୃତିରେ ସାର ସୟାଜି ରାଓ ପ୍ରାଧ୍ୟାପକ ଭାବରେ ଦାୟିତ୍ୱ ବହନ କଲେ ।

୧୯୩୬ରେ ପୁଣି ତାଙ୍କ ବିଦ୍‌ବତ୍ତାର ସ୍ୱୀକୃତି ମିଳିଲା । ସେ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ପ୍ରାଚ୍ୟ ଧର୍ମ ସମୂହ ଏବଂ ନୀତି ଶାସ୍ତ୍ରର ସ୍ପାଲଡ଼ିଂ ପ୍ରାଧ୍ୟାପକ ପଦପାଇଁ ଆମ ିତ ହୋଇ ୧୬ ବର୍ଷ ଧରି ସେ ଦାୟିତ୍ୱ ନିର୍ବାହ କଲେ । ତାଙ୍କ ବିଷୟରେ ପ୍ରବୀଣତା ଏବଂ ସ୍ୱଚ୍ଛଚିନ୍ତା ଓ ଅଭିବ୍ୟକ୍ତି ପାଇଁ ସେ ବହୁ ଆକାଂକ୍ଷିତ ଶିକ୍ଷକ ଭାବରେ ପ୍ରବର୍ତ୍ତିତ ହେଲେ । ତାଙ୍କର ଜନସାଧାରଣଙ୍କ ପ୍ରତି ଆନ୍ତରିକତା ଏବଂ ସାମର୍ଥ୍ୟ ତାଙ୍କୁ ଆହୁରି ଅଧିକ ଭାବରେ ଲୋକପ୍ରିୟ କରିଥିଲା । ତାଙ୍କ ବ୍ୟକ୍ତିତ୍ୱର ଏହି ବିଭୂତି ତାଙ୍କର ଉଜ୍ଜ୍ୱଳମୟ ଜୀବନରେ ଅସୁମାରି ଅନୁରକ୍ତ ଚୂର୍ଣ୍ଣ କରି ଖୋଲିଥିଲା ।

ବ୍ରିଟିଶ ଶାସନର ଶେଷ ପର୍ଯ୍ୟାୟରେ ଗାନ୍ଧିଜୀଙ୍କର କର୍ମଧାରା ଏବଂ ଚିନ୍ତନକୁ ସେ ଅତିମାର୍ଜିତ ଏବଂ ଦିବ୍ୟ ବିଶ୍ଲେଷଣ କରି ପାରିଥିଲେ । ସ୍ୱାଧୀନ ଭାରତରେ ସେ ନେହେରୁଙ୍କର ବୈଦେଶିକ ନୀତିକୁ ଆଦର୍ଶବାଦୀ ବଳିଷ୍ଠ ପୃଷ୍ଠଭୂମି ଯୋଗାଇ ଦେଇଥିଲେ ।

## ଅନ୍ତରାଷ୍ଟ୍ରୀୟ ସମ୍ମାନ

ଉଚ୍ଚ ନୀତି ଏବଂ ଅସଫଳତା ବିହୀନ ସମ୍ମାନ ପ୍ରତି ତାଙ୍କର ଅଙ୍ଗୀକାର ସେ ଗ୍ରହଣ କରିଥିବା ଦାୟିତ୍ୱକୁ ସାଧୁତା ଏବଂ ନୈତିକତାର ମର୍ଯ୍ୟାଦା ପ୍ରଦାନ କରିଛି । ଭାରତରେ ଡକ୍ଟର ରାଧାକୃଷ୍ଣନ୍ ଜଣେ ଅତି ସମ୍ମାନିତ ଏବଂ ବିଦେଶରେ ସେ ତାଙ୍କ ସମୟରେ ଅନ୍ୟତମ ସର୍ବୋଚ୍ଚ ସମ୍ମାନିତ ଲୋକପ୍ରିୟ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ସେ ଅତିଶୀଘ୍ର ଦାର୍ଶନିକ ଭାବରେ ଆନ୍ତରାଷ୍ଟ୍ରୀୟ ସ୍ୱୀକୃତ ପାଇ ସାରିଥିଲେ । ସ୍ୱାଧୀନତା ପରେ ଏହି ଦାର୍ଶନିକ ଜ୍ୟୋତିଷ୍କ ଭାରତୀୟ ନିର୍ଯ୍ୟାସର ପରିପୂର୍ଣ୍ଣବ୍ୟକ୍ତିତ୍ୱ ଥିଲେ ମଧ୍ୟ ବିଶ୍ୱଜନୀତ ଅଭିମୁଖ୍ୟ ପାଇଁ ସୋଭିଏତ ରାଷ୍ଟ୍ର ସଙ୍ଘରେ ଜଣେ ଆଦର୍ଶବାଦୀ ଦୂତଭାବରେ ନବଜାତ ଭାରତୀୟ ରାଷ୍ଟ୍ରକୁ ଆନ୍ତରାଷ୍ଟ୍ରୀୟ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବାରେ ସକ୍ଷମ ହୋଇଛନ୍ତି ।

## ରାଷ୍ଟ୍ରର ନେତୃତ୍ୱ

୧୯୫୨ରେ ଡକ୍ଟର ରାଧାକୃଷ୍ଣନ ଭାରତୀୟ ସାଧାରଣତନ୍ତ୍ର ଉପରାଷ୍ଟ୍ରପତି ଭାବରେ ନିର୍ବାଚିତ ହେଲେ । ୧୯୬୨ରେ ପାଞ୍ଚ ବର୍ଷ ପାଇଁ ତାଙ୍କୁ ରାଷ୍ଟ୍ରର ସର୍ବୋଚ୍ଚ ମୁଖ୍ୟ କରାଗଲା । ରାଜନୀତି ପ୍ରତି ଅନାସକ୍ତ ଜଣେ ଶିକ୍ଷାବିତ୍ ଏବଂ ପ୍ରବୀଣ ବିଦ୍ୱାନ ତଥା ଆନ୍ତରାଷ୍ଟ୍ରୀୟ ସମ୍ମାନର ଅଧିକାରୀଙ୍କୁ ରାଷ୍ଟ୍ରପତି ଭାବରେ ଅଧିଷ୍ଠିତ କରାଇବା ହେଉଛି ଭାରତୀୟ ଗଣତ ନ୍ତ୍ରର ଗୌରବ । ଭାରତ ପରି ନବଜାତ ଦେଶ ପକ୍ଷରେ ଦୃଢ଼ତାର ସହିତ ତାହାର ସ୍ୱରାଷ୍ଟ୍ର ଏବଂ ପରରାଷ୍ଟ୍ର ନୀତି, ଦୃଷ୍ଟିକୋଣ ଏବଂ ଅଭିଳାଷକୁ ସୁସ୍ପଷ୍ଟ ଭାବରେ ବ୍ୟାଖ୍ୟା କରିବା ପାଇଁ ତାଙ୍କ ପରି ରାଷ୍ଟ୍ରପତି ପାଇବା ସୌଭାଗ୍ୟର ବିଷୟ । ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଅବିଶ୍ୱାସ ଏବଂ ଅନିଶ୍ଚିତତାର ପରିସ୍ଥିତିରେ ତାହାହିଁ ଥିଲା ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ।

ରାଷ୍ଟ୍ରପତି ଭାବରେ ତାଙ୍କ ନିଯୁକ୍ତିକୁ ଉଚ୍ଚ ପ୍ରଶଂସା କରି ବର୍ଟ୍ରାଣ୍ଡ ରସେଲ କହିଥିଲେ ଯେ ଭାରତର ରାଷ୍ଟ୍ରପତି ଭାବରେ ଡକ୍ଟର ରାଧାକୃଷ୍ଣନ ଅବସ୍ଥାପିତ ହେବାରେ ଦର୍ଶନ ବିଦ୍ୟା ସମ୍ମାନିତ ହୋଇଛି ଏବଂ ମୁଁ ଜଣେ ଦାର୍ଶନିକ ଭାବରେ, ଏଥିରେ ବିଶେଷ ଭାବରେ ଆନନ୍ଦିତ । ଦାର୍ଶନିକମାନେ ରାଜା ହୁଅନ୍ତୁ ବୋଲି ପ୍ଲେଟୋ ଚାହିଁଥିଲେ ଏବଂ ଜଣେ ଦାର୍ଶନିକଙ୍କୁ ରାଷ୍ଟ୍ରପତି କରିବାରୁ ଭାରତ ପ୍ରତି ଏହା ବରଦାନ ହୋଇଛି । ରାଧାକୃଷ୍ଣନଙ୍କ ରାଷ୍ଟ୍ରପତି କାଳୀନ ଘଟଣାବଳୀ ଇତିହାସରେ ରୋମାଞ୍ଚକର ଏବଂ ବିସ୍ମୟଜନକ ଅଧ୍ୟାୟ । ୧୯୬୨ରେ ସେ ରାଷ୍ଟ୍ରପତି ହେବାର କିଛି ମାସ ମଧ୍ୟରେ ଚୀନ ଭାରତ ଆକ୍ରମଣ କଲା । ଏହା ଦ୍ୱାରା ରାଷ୍ଟ୍ରର ନୈତିକବଳ ଦୋହଲିଗଲା । କିନ୍ତୁ ରାଧାକୃଷ୍ଣନ୍‌ଙ୍କ ଦୃଢ଼ ବଜ୍ରଗମ୍ଭୀର ସ୍ୱର ବେତାରତରଙ୍ଗରେ ପ୍ରତିଧ୍ୱନିତ ହୋଇ ଦୋହଲି ଯାଉଥିବା ରାଷ୍ଟ୍ରକୁ ଆଶ୍ୱସ୍ତ କଲା ।

୧୯୬୫ରେ ପାକିସ୍ଥାନ ଆମ ଦେଶର ପଶ୍ଚିମ ସୀମାନ୍ତରେ ଆକ୍ରମଣ କଲା । ୧୯୬୫ ସେପ୍‌ଟେମ୍ବର ୨୫ରେ ରାଷ୍ଟ୍ରକୁ ଦେଇଥିବା ଉଦ୍‌ବୋଧନ ଦେଇ ଡକ୍ଟର ରାଧାକୃଷ୍ଣନ କହିଥିଲେ ଯେ, ପାକିସ୍ଥାନ ଧରିନେଇଥିଲା ଯେ ଭାରତ ଅତି ଦୁର୍ବଳ; କିମ୍ବା ଅତି ଉଦାସୀନ କିମ୍ବା ଯୁଦ୍ଧ କରିବାକୁ ଅତି ଗର୍ବୋନ୍ନତ । ସ୍ୱାଭାବିକ ଭାବରେ ଭାରତ ଅସ୍ତ୍ର ଧରିବାକୁ ଅନାଗ୍ରହୀ ହେଲେ ମଧ୍ୟ ନିଜର ପ୍ରତିରକ୍ଷା ପାଇଁ ଆବଶ୍ୟକ ହେଲେ ଅସ୍ତ୍ର ଧାରଣ କରିବ । ପାକିସ୍ଥାନ ଧରି ନେଇଥିଲା ଯେ ଦେଶରେ ସାମ୍ପ୍ରଦାୟିକ ବିଶୃଙ୍ଖଳା ସୃଷ୍ଟି ହୋଇଯିବ ଏବଂ ସେହି ବିପଦ ପରିସ୍ଥିତିରେ ସେ ମାଡ଼ି ଆସିବ । କିନ୍ତୁ ତାହାର ଭ୍ରାନ୍ତକଳ୍ପନା ସାଙ୍ଘାତିକ ଭାବରେ ତାକୁ ନିରାଶ କରିଥିଲା ।

ଭାରତୀୟ ଗଣତନ୍ତ୍ର ରେ ରାଧାକୃଷ୍ଣନଙ୍କର ଦୃଢ଼ ବିଶ୍ୱାସ ଥିଲା । ୧୯୬୭ ମେ ୧୨ରେ ରାଷ୍ଟ୍ର ଉଦ୍ଦେଶ୍ୟରେ ତାଙ୍କର ବିଦାୟକାଳୀନ ବେତାର ଭାଷଣରେ ସେ କହିଥିଲେ ଯେ ବେଳେ ବେଳେ ବିପର୍ଯ୍ୟୟ ଘଟିଲେ ମଧ୍ୟ ଭାରତର ସମ୍ବିଧାନ ଅବ୍ୟାବଧି ସଫଳତାର ସହିତ କାର୍ଯ୍ୟକାରୀ ହୋଇଛି । ସେ ସତର୍କ କରି ଦେଇଥିଲେ ଯେ ଶାସନର ପଦ୍ଧତିଠାରୁ ଗଣତନ୍ତ୍ର ଆହୁରି ଅଧିକ ବ୍ୟାପକ । ଏହା ହେଉଛି ଜୀବନର ଏକ ମାର୍ଗ । ମାନବିକ ବ୍ୟାପାରରେ ମାର୍ଜିତ ଆଚରଣର ଶାସନ । ଆମକୁ ଶାନ୍ତିପୂର୍ଣ୍ଣ ପରିବର୍ତ୍ତନ ଏବଂ ଉଗ୍ର ସଂସ୍କାରର ସ୍ଥପତି ହେବାକୁ ପଡ଼ିବ ।

## ମହାନ୍ ଶିକ୍ଷକ

୧୯୬୨ରେ ରାଧାକୃଷ୍ଣନ ଭାରତର ରାଷ୍ଟ୍ରପତି ହେବାଠାରୁ ପ୍ରତିବର୍ଷ ସେପ୍ଟେମ୍ବର ମାସରେ ପଡୁଥିବା ତାଙ୍କ ଜନ୍ମ ଦିବସକୁ ଗୁରୁଦିବସ ଭାବରେ ପାଳନ କରାଯାଉଛି । ଶିକ୍ଷକମାନଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କକୁ ଏହାଦ୍ୱାରା ସମ୍ମାନିତ କରାଯାଉଛି । ସେ ରାଷ୍ଟ୍ରପତି, ଉପରାଷ୍ଟ୍ରପତି କିମ୍ବା ରାଷ୍ଟ୍ରଦୂତ ଯେକୌଣସି ପଦରେ ଥିଲାବେଳେ ମଧ୍ୟ ସେ ତାଙ୍କର ସାରାଜୀବନ ମୁଖ୍ୟତଃ ଜଣେ ଶିକ୍ଷକ । ଶିକ୍ଷକ ଜୀବିକା ପ୍ରତି ତାଙ୍କ ସର୍ବୋଚ୍ଚ ମମତା ଥିଲା ଏବଂ ଯେଉଁମାନେ ତାଙ୍କ ପାଖରେ ଅଧ୍ୟୟନ କରିଛନ୍ତି ସେମାନେ ସମସ୍ତେ କୃତଜ୍ଞତାର ସହିତ ନିଜର ଶିକ୍ଷକ ଭାବରେ ସ୍ମରଣ କରନ୍ତି।

ପଣ୍ଡିତ ଜବାହାରଲାଲ ନେହରୁ ସର୍ବଦା ତାଙ୍କର ଅନ୍ୟତମ ଘନିଷ୍ଠ ବନ୍ଧୁଥିଲେ । ସେ ତାଙ୍କ ବିଷୟରେ କହିଥିଲେ ଯେ, ବହୁବିଧ ପଦବୀରେ ରହି ସେ ମାତୃଭୂମିର ସେବା କରିଛନ୍ତି । କିନ୍ତୁ ସର୍ବୋପରି ସେ ଜଣେ ମହାନ୍ ଶିକ୍ଷକ ଥିଲେ ଏବଂ ତାଙ୍କଠାରୁ ଆମେ ଅନେକ କିଛି ଶିଖିଛେ ତଥା ଶିଖିବୁ ମଧ୍ୟ । ଜଣେ ମହାନ୍ ଦାର୍ଶନିକ, ମହାନ୍ ଶିକ୍ଷକ ଏବଂ ମହାନ୍ ମାନବ ପ୍ରେମୀଙ୍କୁ ରାଷ୍ଟ୍ରପତି ଭାବରେ ପାଇବା ହେଉଛି ବିରଳ ସୌଭାଗ୍ୟ ।

ରାଷ୍ଟ୍ରର ସର୍ବୋଚ୍ଚ ସମ୍ମାନ 'ଭାରତରତ୍ନ' ମାନବ ସମାଜ ପାଇଁ ତାଙ୍କର ଉଲ୍ଲେଖନୀୟ ସେବାକୁ ସ୍ୱୀକାର କରି ୧୯୫୪ରେ ତାଙ୍କୁ ପ୍ରଦାନ କରାଯାଇଛି ।

(ପି. ଆଇ. ବି. ସୌଜନ୍ୟରୁ)

## ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମରେ ୪୦ ଲକ୍ଷ ୪ ହଜାର ୩୫୩ ଛାତ୍ରଛାତ୍ରୀ ଉପକୃତ

୧୯୯୫ ମସିହାଠାରୁ କାର୍ଯ୍ୟକାରୀ ହୋଇ ଆସୁଥିବା ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଦ୍ୱାରା ଗତ ଆର୍ଥିକ ବର୍ଷରେ ରାଜ୍ୟର ୪୦ ହଜାର ୧୩୨ଟି ପ୍ରାଥମିକ ବିଦ୍ୟାଳୟର ୪୦ ଲକ୍ଷ ୪ ହଜାର ୩୫୩ ଜଣ ଛାତ୍ରଛାତ୍ରୀ ଉପକୃତ ହୋଇଛନ୍ତି । ଏହି ଛାତ୍ରଛାତ୍ରୀମାନଙ୍କ ମଧ୍ୟରୁ ସାଧାରଣ ବର୍ଗର ୨୩ ଲକ୍ଷ ୪୭ ହଜାର ୫୦୧ ଜଣ ଛାତ୍ର ଓ ୧୬ ଲକ୍ଷ ୫୬ ହଜାର ୮୫୨ ଜଣ ଛାତ୍ରୀ ହୋଇଥିବା ସ୍ଥଳେ ଅନୁସୂଚିତ ଜାତିର ୬ ଲକ୍ଷ ୭୮ ହଜାର ୧୪୬ ଜଣ ଛାତ୍ରଛାତ୍ରୀ ଓ ଅନୁସୂଚିତ ଉପଜାତି ବର୍ଗର ୭ ଲକ୍ଷ ୧୦ ହଜାର ୬୭୩ ଜଣ ଛାତ୍ରଛାତ୍ରୀ ଅଛନ୍ତି । ବିଭାଗ ସୂତ୍ରରୁ ପ୍ରକାଶ ଯେ ଏହି କାର୍ଯ୍ୟକ୍ରମ ନିମିତ୍ତ ଭାରତ ସରକାରଙ୍କ ଖାଦ୍ୟ ନିଗମ ଦ୍ୱାରା ୧,୬୨,୦୯୫.୬ ଟନ୍ ଚାଉଳ ଯୋଗାଇ ଦିଆଯାଇଥିଲା ଓ ରାଜ୍ୟ ସରକାର ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ ପାଇଁ ୪୨ କୋଟି ୫୧ ଲକ୍ଷ ୫୫ ହଜାର ଟଙ୍କା ଆବଣ୍ଟନ କରିଥିଲେ ।

# ତିରଙ୍ଗା

ଶ୍ରୀ ହରିଶଙ୍କର ବଡ଼ପଣ୍ଡା

ଶୀତାଂଶୁ ବ୍ୟକ୍ତିପରି
ନିଜେଇ ନିଜେ ଗଢୁରି
ମନ୍ତ୍ର ଭିତରେ ମନ୍ତ୍ରପରି
ତଡ଼ିତ୍ ବେଗରେ
ଆକାଶକୁ ଛୁଇଁ ଯାଉଛୁ ତୁ
ତୋ' ଭିତରେ ତୋତେ ଖୋଜିଲା ବେଳକୁ
ଅନୁପମ ଆତ୍ମ ସଂଧାନରେ
ନିଜେ ହିଁ ନିଜ ଭିତରେ
ନିଶ୍ଚିହ୍ନ ହୋଇ ଯାଉଛି ମୁଁ
ଠିକ୍ ବିନ୍ଦୁଟିଏ ପରି
ଯେଉଁଠି ଶୂନ୍ୟତାର ଆରମ୍ଭ
ଓ ପୂର୍ଣ୍ଣତାର ହୁଏ ଶେଷ ।
ପବନର ପ୍ରାଣରେ
ଦୋଳାୟିତ ତୋ'ର ସ୍ପନ୍ଦନ
ଆକାଶର ରଙ୍ଗରେ
ଲହରିତ ତୋ'ର କମ୍ପନ
ଜହ୍ନିଲୁହର ସ୍ପର୍ଶରେ
ରଂଗାୟିତ ତୋ'ର ପ୍ରଜ୍ଞା
ସବୁ ସାକାର ଭିତରେ
ନିରାକାର ତୋ'ର ସଂଜ୍ଞା
ତିରଙ୍ଗା !
କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ
ଆରବ ସାଗରରୁ 'ଚିଲିକା ପର୍ଯ୍ୟନ୍ତ
ତୁ ଯେଉଁ ମନ୍ତ୍ରରେ
ଏ ଜାତିର ସ୍ୱାଭିମାନକୁ ମନ୍ତ୍ରସିକ୍ତ କଲୁ
ସେଠି ଏବେ ସଂସ୍କରିତ କୋଟି ପ୍ରାଣର
ସଂଗୀତ
କାଳଜୟୀ ମନ୍ତ୍ରଗୀତ ।
ସକଳ ଅର୍ଗଳୀରୁ
ମୁକୁଳାଇ ଦେଇଛି ବଂଧନୀ
ପ୍ରଭାତୀର ଶଙ୍ଖନାଦ ବେଳେ
ଭରି ଦେଇଛି ବଞ୍ଚିବାର ସଂଜୀବନୀ
କାଳକାଳକୁ
ସୃଷ୍ଟି କରି ଦେଇଛୁ ଇତିହାସ
ସ୍ୱାଧୀନତାର ପୁଣ୍ୟତୋୟାରେ
ଆଣି ଦେଇଛୁ
ଚିର ସଲୀଳା ଜୁଆରର ହସ
ମାଟି ମା'ର କୋଳରେ
ମୋର ସ୍ୱପ୍ନ ସାଧନା ସିଦ୍ଧିକୁ ରପାଣିତ କରି
ଆପଣେଇ ନେଇଛୁ
ଆଶା, ଅନୁରାଗ, ଅନୁଚିନ୍ତନକୁ ।

ସ୍ୱାଧୀନତାର ପୁଣ୍ୟ ଦିନରେ
ତୋତେ ଶତକୋଟି ପ୍ରଣାମ୍
ଜୀବନର ପ୍ରତିପାଦରେ
ତୋ'ର ସ୍ୱପ୍ନ ସାକାର ହେଉ
ଦୋଳାୟିତ ତୋ'ର ବାହୁଛାୟା ତଳେ
ଅନନ୍ୟ ସ୍ୱାଭିମାନର ଏ ଜାତି, ଏ ଦେଶ
ପୂର୍ଣ୍ଣମିଦଂରେ ଉଦ୍‌ବେଳିତ ହେଉ
ତା'ର ଗର୍ବ ଗାରିମା ଦଶଦିଗରେ ଝଂକାରିତ ହେଉ
'ବନ୍ଦେ ମାତରଂ' ଧ୍ୱନିରେ
ଗଗନ ପବନ ନିନାଦିତ ହେଉ !!

---

ବାଣୀଶ୍ରୀବିହାର,
ବଲାଙ୍ଗୀର-୭୬୭୦୦୨

# ଦରଦୀ କବି ଗୋପବନ୍ଧୁ

ଡକ୍ଟର ପ୍ରଶାନ୍ତ ରାଉତ

ଊନବିଂଶ ଶତାବ୍ଦୀରେ ଭାରତବର୍ଷ ଅନେକ ଯୁଗ ପୁରୁଷଙ୍କୁ ଜନ୍ମ ଦେଇ ଧନ୍ୟ ହୋଇଛି । ଏହି ଶତାବ୍ଦୀର ଶେଷ ଭାଗରେ ମଧ୍ୟ ଅପହୃତ ସ୍ୱାଧୀନତାର ପୁନରୁଦ୍ଧାର ପାଇଁ ଜାତୀୟ କଂଗ୍ରେସ ଭଳି ସଂଗ୍ରାମୀ ସଂଗଠନର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ଦେଶର ସ୍ୱାଧୀନତା ଆନ୍ଦୋଳନ, ପ୍ରଦେଶମାନଙ୍କରେ ସାମାଜିକ ବିପ୍ଳବ ଏହି ସୁଯୋଗ୍ୟ ସନ୍ତାନମାନଙ୍କୁ ସେବା, ତ୍ୟାଗ ଓ ସଂଗ୍ରାମର ମନ୍ତ୍ରରେ ଅନୁପ୍ରାଣିତ କରିଥିଲା । ଯୋଗଜନ୍ମା ମହାପୁରୁଷମାନେ ଭାରତର ସ୍ୱାଧୀନତାର ଯଜ୍ଞରେ ନିଜକୁ ଆହୁତି ଦେବା ସଙ୍ଗେ ସଙ୍ଗେ ଭାରତୀୟ ସମାଜକୁ ଜୀବନର ଏକ ନୂତନ ମୂଲ୍ୟବୋଧର ବାର୍ତ୍ତା ଦେଇଥିଲେ । ବହୁମୁଖୀ ପ୍ରତିଭାର ଅଧିକାରୀ ଉତ୍କଳମଣି ଗୋପବନ୍ଧୁ ଜୀବନର ଉତ୍‌ଥାନ ପତନ ମଧ୍ୟରେ ଯେପରି ତାଙ୍କର ବ୍ୟକ୍ତିତ୍ୱ ବିକାଶ କରିଛନ୍ତି, ତାହା ଅନ୍ୟତ୍ର ବିରଳ ।

ଓଡ଼ିଶାର ପୁରୀ ଜିଲ୍ଲା ଅନ୍ତର୍ଗତ ସାକ୍ଷୀଗୋପାଳ ନିକଟବର୍ତ୍ତୀ ସୁଆଣ୍ଡୋ ଗ୍ରାମରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ୧୮୭୭ ମସିହା ଅକ୍ଟୋବର ୯ ତାରିଖରେ ତାଙ୍କର ଜନ୍ମ । ଶିକ୍ଷାର ଅଭାବ, ଗମନାଗମନର ଅସୁବିଧା ଓ ଯୁଗଯୁଗର ଅନ୍ଧବିଶ୍ୱାସ ଓ କୁସଂସ୍କାର ଫଳରେ ସାଧାରଣ ଜନତା ଅଣନିଶ୍ୱାସୀ ହୋଇ ଯାଇଥିଲେ । ଏହି ପରିପ୍ରେକ୍ଷୀରେ ସମାଜର ପରିବର୍ତ୍ତନପାଇଁ ଉତ୍କଳ ଗୌରବ ମଧୁସୂଦନ ଓ ଅନ୍ୟଦିଗରେ ଉତ୍କଳମଣି ଗୋପବନ୍ଧୁ ଦାସ ନେତୃତ୍ୱ ନେଇଥିଲେ । ଗୋପବନ୍ଧୁ ଥିଲେ ମହାତ୍ମାଗାନ୍ଧୀଙ୍କର ପଟ୍ଟଶିଷ୍ୟ । ସେ ଦେଶର ସ୍ୱାଧୀନତା ପାଇଁ କାରାବରଣ କରିଛନ୍ତି । ଦୁର୍ଗତ ମାନବର ସେବାପାଇଁ ନିଜ ଜୀବନକୁ ଉତ୍ସର୍ଗୀକୃତ କରିଛନ୍ତି । ବନ୍ୟା ଦୁର୍ଗତଙ୍କ ସେବା କରିବା ପାଇଁ ଗୋପବନ୍ଧୁଙ୍କ ଭଳି ନିସ୍ୱାର୍ଥପର ବ୍ୟକ୍ତି ଆମ ଦେଶରେ ଦୁର୍ଲଭ । ଅଭାବ, ଅନଟନ, ମରୁଡ଼ି, ବନ୍ୟା, ବାତ୍ୟା ସମୟରେ ସେ ଓଡ଼ିଶାବାସୀଙ୍କର ଥିଲେ ଆଶାଭରସା । ସେ ଦୁଇଟି ଲକ୍ଷ୍ୟନେଇ ତାଙ୍କ କର୍ମମୟ ଜୀବନ ପଥରେ ଆଗେଇ ଯାଇଥିଲେ । ପ୍ରଥମଟି ହେଲା ଓଡ଼ିଶାର ଦୁଃଖ ଦାରିଦ୍ର୍ୟ ମୋଚନ, ଅନ୍ୟଟି ହେଲା ଭାରତର ସ୍ୱାଧୀନତା । ତାଙ୍କର ସମସ୍ତ ଜାତୀୟ ଯୋଜନାର କର୍ମପୀଠଥିଲା ସତ୍ୟବାଦୀ ବନବିଦ୍ୟାଳୟ । ସତ୍ୟବାଦୀର ଛାତ୍ରମାନେ ଜାତୀୟ ଭାବରେ ଏତେ ଉଦ୍‌ବୁଦ୍ଧ ହୋଇପଡ଼ିଥିଲେ ଯେ ତାଙ୍କୁ ଲକ୍ଷ୍ୟକରି ତତ୍‌କାଳୀନ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଏଡ୍‌ୱାର୍ଡ୍ ଗେଟ୍ କହିଥିଲେ–The boys of Satyabadi School are like bomb's. କବି ଗୁରୁ ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନ ପ୍ରତିଷ୍ଠାର ପ୍ରାୟ ଗୋଟିଏ ଦଶକ ପୂର୍ବରୁ ଗୋପବନ୍ଧୁ ସତ୍ୟବାଦୀଠାରେ ବକୁଳ ଛୁରିଆନାର ପ୍ରାକୃତିକ ପରିବେଶରେ ଶିକ୍ଷାଦାନର ଅଭୂତପୂର୍ବ ପରମ୍ପରା ଆରମ୍ଭ କରିଦେଇଥିଲେ ।

ଗୋପବନ୍ଧୁ ଥିଲେ ତ୍ୟାଗ ଓ ସେବାର ପ୍ରତୀକ । ସ୍ୱାଧୀନତାର ବାର୍ତ୍ତାବହ । ଶିକ୍ଷା କ୍ଷେତ୍ରରେ ଅଗ୍ରଣୀ ସଂସ୍କାରକ । ଏହିସବୁ ବିବିଧତା ସାମଗ୍ରିକଭାବେ ତାଙ୍କ କାବ୍ୟ କବିତାରେ ପ୍ରତିଫଳିତ ହୋଇଥିଲା । ତାଙ୍କ କାରାକବିତା, ବନ୍ଦୀର ଆତ୍ମକଥା ହେଉଛି ତାଙ୍କ କର୍ମମୟ ଜୀବନର ବୈପ୍ଳବିକ ଅଭିବ୍ୟକ୍ତି । ସ୍ୱାଧୀନତା ପାଇଁ ଆତ୍ମୋତ୍ସର୍ଗ, ଦୁର୍ଗତ ଦରିଦ୍ର ନାରାୟଣର ସେବା ଆଦି ତାଙ୍କ କବିତାରେ ପ୍ରତିଧ୍ୱନିତ । ଜାତିହିଁ ତାଙ୍କ କବିତାର ଉଦ୍‌ବୋଧନ । ଈଶ୍ୱର ବିଶ୍ୱାସ, ଭଗବତ୍ ବିଶ୍ୱାସ ତାଙ୍କ କବିତାର ନିର୍ଯ୍ୟାସ । ଖଟିଖିଆ, ମେହେନତି କୃଷକର ଦୁଃଖ ଓ ଦୁର୍ଦ୍ଦଶାକୁ ଗୋପବନ୍ଧୁ ତାଙ୍କର କବିତାରେ ଜୀବନ୍ତ ଭାବରେ ପ୍ରକାଶ କରିଛନ୍ତି । ଗାଁର ସାଧାରଣ ଗୃହୀଟିଏ ପାଇଁ ତାଙ୍କର ସହାନୁଭୂତି ଓ ସମ୍ବେଦନା ଅତ୍ୟନ୍ତ ପ୍ରାଣସ୍ପର୍ଶୀ ।

କେତେ କେତେ ସୁଖୀ କେତେ ଭଲ ଲୋକ
ନପାନ୍ତି ଦିବେଳା ପେଟପୁରା ଢୋକେ
ଥିଲେ ଯେଉଁ ମାନ ଉତ୍କଳ ସନ୍ତାନ
ପାଇକ ପ୍ରଧାନ ମାଗୁଛନ୍ତି ଭିକ
ଦେହେ ନାହିଁ ମାଂସ ଦୋହଲୁଛି କଣ୍ଠା
ଅନାହାରେ ଆହା ନଉଠଇ ପଞ୍ଜା

ସହାନୁଭୂତି ଓ ସହନଶୀଳତାର ମାପକାଠିରେ କବି ଜାତିଜାତିର ସମ୍ପର୍କ, ବ୍ୟକ୍ତି ବ୍ୟକ୍ତିର ସମ୍ପର୍କ ବିଚାର କରିଛନ୍ତି । ପାପପୁଣ୍ୟ, ନ୍ୟାୟ ଅନ୍ୟାୟ, ତ୍ୟାଗଭୋଗ ଏସବୁ କବିଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରିଛି । ସେଥିପାଇଁ ତାଙ୍କ କବିତାରେ ହିଂସା ଓ ଶୋଷଣ ବିରୁଦ୍ଧରେ ତୀବ୍ର ପ୍ରତିବାଦ ଶୁଣିବାକୁ ମିଳେ । ପୁନଶ୍ଚ କ୍ଷୁଧାର୍ତ୍ତ ଓ ସର୍ବହରା ମଣିଷଙ୍କ ପାଇଁ ତାଙ୍କ କବିତାଗୁଡ଼ିକ ଉଦ୍ଦିଷ୍ଟ । ଆଦର୍ଶବୋଧ ତାଙ୍କ କବିତାରେ ଯେତେ ସ୍ପଷ୍ଟ ନୁହେଁ, ତାହାଠାରୁ ଅଧିକ ସ୍ପଷ୍ଟ ହୋଇଛି କବିର ଆବେଗ । କବିଙ୍କ ଭାଷାରେ :–

ନିଜସ୍ୱାର୍ଥ ଲାଗି କାନ୍ଦ ନୁହେଁ ହିନ୍ଦୁ
ବିଶ୍ୱେ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ

ପ୍ରେମଚାନ୍ଦଙ୍କ ମତରେ ବାସ୍ତବିକ ଯେଉଁ ସାହିତ୍ୟ ଆମମାନଙ୍କ ମନରେ ସତ୍ୟାନୁସନ୍ଧାନ ପ୍ରବୃତ୍ତି ଜାଗ୍ରତ କରାଏ ନାହିଁ, ଯେଉଁ

ସାହିତ୍ୟ ଆମମାନଙ୍କୁ ମାନସିକ ଏବଂ ଆଧ୍ୟାତ୍ମିକ ସନ୍ତୋଷ ଦେଇପାରେ ନାହିଁ, ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହେବାପାଇଁ ଯେଉଁ ସାହିତ୍ୟ ଆମମାନଙ୍କର ଇଚ୍ଛାଶକ୍ତିକୁ ଆହୁରି ଦୃଢ଼ୀଭୂତ କରିନପାରେ, ସେହି ସାହିତ୍ୟ ବର୍ତ୍ତମାନ ଯୁଗରେ ଆମମାନଙ୍କ ପାଇଁ ଅନାବଶ୍ୟକ । Literature which does not awaken in us the desire to seek truth, which does not give us mental and spiritual satisfaction, which doesnot strengthen our will to over come difficulties such literature is uscless for us today. ଗୋପବନ୍ଧୁଙ୍କ ସାହିତ୍ୟ ନିଛାଟ ବାସ୍ତବତା ଉପରେ ଆଧାରିତ । ତେଣୁ ତାଙ୍କ ସାହିତ୍ୟରେ ଗରିବ ପ୍ରଜାକୁଳର ସମସ୍ୟା ହିଁ ପ୍ରତିଫଳିତ । ଏ ପର୍ଯ୍ୟନ୍ତ ଜଣେ ହେଲେ କବି ଓଡ଼ିଆ ବନ୍ଦୀର ଦୁଃଖାବହ ବୀରତ୍ୱ ଗାଥାକୁ ସାହିତ୍ୟରେ ସ୍ଥାନ ଦେଇନଥିଲେ । କୌଣସି କବି ଏ ପର୍ଯ୍ୟନ୍ତ ଜାତୀୟ ରଙ୍ଗମଞ୍ଚରେ ଭୀଷ୍ମଙ୍କର ସ୍ଥାନ ଗ୍ରହଣ କରିନଥିଲେ । ସେଥିପାଇଁ ଗୋପବନ୍ଧୁଙ୍କର ବ୍ୟକ୍ତିଗତ ଜୀବନ ଧାରାରେ ତାଙ୍କର ସୃଷ୍ଟି ସାହିତ୍ୟ ବିଶ୍ୱମୁଖୀ ହୋଇପାରିଛି । ତାଙ୍କର "ବନ୍ଦୀର ଆତ୍ମକଥା" ଏକ ଅନବଦ୍ୟ ସୃଷ୍ଟି ତଥା ଜାତୀୟ ଜୀବନର ଅଶ୍ରୁଲିପି । ଏହାକୁ ଓଡ଼ିଶାର ଜାତୀୟ ଆନ୍ଦୋଳନର ପୂଣ୍ୟମନ୍ତ୍ର ବୋଲି ଅବହିତ କରାଯାଏ ।

ଅଗଟ ଚଳାଅ ପ୍ରତି ଘରେ ଘରେ
ଗ୍ରାମର କଳହ ତୁଟାଅ ଗ୍ରାମରେ ।

ବାସ୍ତବ ଜୀବନରେ ଗୋପବନ୍ଧୁ ଥିଲେ ସତ୍ୟ, ଶାନ୍ତି ଓ ତ୍ୟାଗର ଉପାସକ । ସମ୍ପ୍ରୀତି ଓ ଜାତିପ୍ରୀତିର ଭାବନାରେ ମହିମାନ୍ୱିତ ତାଙ୍କର ଜୀବନ ଦର୍ଶନ । ଏହି ଦିଗରୁ ବିଚାରକଲେ ତାଙ୍କ କାବ୍ୟ ଚେତନାରେ ସତ୍ୟ, ଶାନ୍ତି ଓ ତ୍ୟାଗର ଏକ ସମିଶ୍ରଣ ରୂପ ପରିଦୃଷ୍ଟ ହୁଏ । କବିଙ୍କର କାବ୍ୟନାୟକ ଧର୍ମପଦ ଶ୍ରୀଜଗନ୍ନାଥଙ୍କୁ ସାକ୍ଷ୍ୟ ଦେଇ ଶିଳ୍ପୀ କୁଳକୁ ସାନ୍ତ୍ୱନା ଦେବାକୁ ଯାଇ କହିଛନ୍ତି ।

ନୀଳାଚଳେ ଯେବେ ସତ୍ୟ ଜଗନ୍ନାଥ
ନହେବ କିଛି ଆପଦ

ଦୁଃଖୀ, ଦୁର୍ଗତ ଏବଂ ବିପନ୍ନମାନଙ୍କ ପାଇଁ ଅକୁଣ୍ଠିତ ଚିତ୍ତରେ ତ୍ୟାଗ କରିବାରେ ଧର୍ମପଦର ଯେଉଁ ଦୁର୍ଦ୍ଦମନୀୟ ସାହସ, ତାହା ସମାଜରେ ବିରଳ । ଧର୍ମପଦ ଜନ୍ମ ନେଇଥିଲା ଦୁର୍ଦ୍ଦଶା ଓ ବିପଦଗ୍ରସ୍ତ ମାନବର ସେବାପାଇଁ, ସାହାଯ୍ୟ ପାଇଁ ।

ବାରଣ ବଚନ............ମୁଁହିଁକୁ ଅନାଇ
ମୋ ମମତା ଏବେ ଛାଡ଼
କାଣ ଏ ଦେଉଳୁ.........ଗଡ଼ି ମରିଛି ମୁଁ
ଭାଙ୍ଗି ମଥା ବୁକୁ ହାଡ଼

ଗୋପବନ୍ଧୁ ମୁଖ୍ୟତଃ ଥିଲେ ଜଣେ ଦରଦୀ ପୁରୁଷ । ତେଣୁ ତାଙ୍କ କବିତାମାନଙ୍କରେ ସେ କେତେବେଳେ ନିଜଜୀବନକୁ ଦେଶପାଇଁ ଉତ୍ସର୍ଗ କରିବା ପାଇଁ ସ୍ପୃହଣିୟ କେତେବେଳେ ନିଜ ପ୍ରାଣ ସ୍ରୋତକୁ ସେହି ପରମ ସ୍ରୋତ ସହ ସାମିଲ କରିଦେବା ପାଇଁ ବ୍ୟାକୁଳ ହୋଇପଡ଼ିଛନ୍ତି । ବଞ୍ଚିରହି ଉତ୍କଳର ଦୁର୍ଦ୍ଦଶା ଦେଖିବା ଅପେକ୍ଷା ମୃତ୍ୟୁ ଅଧିକ ଶ୍ରେୟସ୍କର ବୋଲି ସେ ମନେ କରିଛନ୍ତି । ଏକ ବୃହତ୍ତର ସ୍ୱାର୍ଥକୁ ଆଖି ଆଗରେ ରଖି ତ୍ୟାଗ ତଥା ତପସ୍ୟାର ପଥକୁ ଅନ୍ତିମ କାଳ ପର୍ଯ୍ୟନ୍ତ ପରିହାର ନକରିବାର ପ୍ରତିଜ୍ଞା ନେଇ ସେ ଗାଇଛନ୍ତି–"ଗଲେ ପଛେ ଯାଉ ଜୀବ ଯାହା ହେବ ଦେଖାଯିବ, ଗିରି ଶିଖେ ଲମ୍ଫ ରଖି ଖେଳିବି ମୁଁ ବରଂ" । ଗାନ୍ଧିଜୀଙ୍କ ଭଳି ଗୋପବନ୍ଧୁ ତାଙ୍କ କବିତାମାନଙ୍କରେ ଏକ ଆଦର୍ଶ ରାମ ରାଜ୍ୟର ସ୍ୱପ୍ନ ଦେଖିବାକୁ ଭୁଲି ନାହାନ୍ତି । ସମସ୍ତ ଅପଶାସନର ଦିନେନା ଦିନେ ବିଲୟ ଘଟିବ ଏକଥା କବି ଦୃଢ଼ କଣ୍ଠରେ ସ୍ୱୀକାର କରିଛନ୍ତି । ଶୌର୍ଯ୍ୟ ଓ ସାମର୍ଥ୍ୟରେ ଖ୍ୟାତି ଲାଭ କରିଥିବା ଉତ୍କଳର ଚରମ ଦୁର୍ଦ୍ଦଶା ଦେଖି ଗୋପବନ୍ଧୁ ଅତ୍ୟନ୍ତ ମର୍ମାହତ ହୋଇଛନ୍ତି । ଅତୀତରେ ସମୃଦ୍ଧ ଉତ୍କଳ ସମୟର ପରିବର୍ତ୍ତନ କ୍ରମେ ଦୁର୍ବଳ ହୋଇଯାଇଛି । ଏହାର ଏକ ସୁନ୍ଦର ଉଦାହରଣ ଦେଇ କବି କହନ୍ତି, "ପଡ଼େ ଯେହୁ ଥରେ ସେହି ଉଠେତ ଆବର, ଶୟନର ଅନ୍ତେ ଯଥା ଆସେ ଜାଗର" । ଧନୀ ଓ ଦରିଦ୍ରଙ୍କ ମଧ୍ୟରେ ଏକ ଭେଦଭାବହୀନ ସାଲିସ୍ କରିବାପାଇଁ କବି ଅତିମାତ୍ରାରେ ଭାବପ୍ରବଣ ହୋଇ ଉଠିଛନ୍ତି । ତେଣୁ କବିଙ୍କ ଭାଷାରେ :–ପ୍ରଜାଲାଗି ରାଜା ପ୍ରଜାହିତେ ରାଜନୀତି, ପ୍ରଜାଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି । ନିଷ୍ଠାପରତା, କର୍ତ୍ତବ୍ୟନିଷ୍ଠା, ସତ୍ୟପାଳନ ତଥା ସତ୍ୟ ଭାଷଣ ପ୍ରଭୃତିକୁ କବି ସ୍ୱରାଜ୍ୟସାଧନାର ଏକ ଏକ ଉଲ୍ଲେଖ ଯୋଗ୍ୟ ମାର୍ଗ ବୋଲି ସ୍ୱୀକାର କରିଛନ୍ତି ।

ଗୋପବନ୍ଧୁଙ୍କ କବିତା ମୁଖ୍ୟତଃ ଉଦାର ବିଶ୍ୱପ୍ରୀତିର କବିତା । ଜୀବନର ଏକ ଆଦର୍ଶବୋଧ ଓ ତ୍ୟାଗପୂତ ଅନୁଭବହିଁ ଏହି କବିତାଗୁଡ଼ିକର ମର୍ମବାଣୀ । ବିଶେଷକରି ଈଶ୍ୱର ଓ ମଣିଷକୁ ସତ୍ୟର ଏକ ଯୁଗକାଠରେ ଠିଆ କରାଇ ଏହି ଦରଦୀ ସନ୍ତାନଟି ବିଶ୍ୱର ନିଷ୍ପେଷିତ, ଅବହେଳିତ ଦୀନ ଦରିଦ୍ର ପାଇଁ କେବଳ ଅଶ୍ରୁମୋଚନ କରିନାହିଁ ବରଂ ଜୀବନ ଉତ୍ସର୍ଗ କରିବା ପାଇଁ ସଦାସର୍ବଦା ପ୍ରସ୍ତୁତରହି ଆସିଥିଲା ।

ଅଧ୍ୟାପକ ଓଡ଼ିଆ ବିଭାଗ,
କରିଲୋ ପାଟଣା ମହାବିଦ୍ୟାଳୟ, କେନ୍ଦ୍ରାପଡ଼ା

# ଡକ୍ଟର ରାଜଗୁରୁ–ଏକ ସ୍ମରଣୀୟ ପ୍ରତିଭା

ଡକ୍ଟର ସୀମାଞ୍ଚଳ ପ୍ରଧାନ

ପିତା ହରେକୃଷ୍ଣ ଓ ମାତା ସୁନାମଣି ଦେବୀଙ୍କର ସୁଯୋଗ୍ୟ ସନ୍ତାନ ହେଉଛନ୍ତି ସତ୍ୟ ନାରାୟଣ ରାଜଗୁରୁ । ସେ ୧୯୦୩ ମସିହା ସେପ୍‌ଟେମ୍ବର ୯ ତାରିଖ ଭାଦ୍ର ମାସ କୃଷ୍ଣ ଏକାଦଶୀ ବୁଧବାର ଦିନ ପାରଳାଖେମୁଣ୍ଡି ସହରସ୍ଥ ରାଜଗୁରୁ ବଂଶରେ ଜନ୍ମଗ୍ରହଣ କରିଥିଲେ । ମାତା ପିତା ଦୀର୍ଘଦିନ ଧରି ନିଃସନ୍ତାନ ଥିବାରୁ ସନ୍ତାନ ପ୍ରାପ୍ତି ନିମନ୍ତେ ସତ୍ୟନାରାୟଣ ବ୍ରତ ପାଳନ କରି ପୁତ୍ର ସନ୍ତାନଟିଏ ପ୍ରାପ୍ତ ହେଲେ । ସତ୍ୟନାରାୟଣଙ୍କର ବ୍ରତ ପାଳନ କରି ପୁତ୍ର ସନ୍ତାନଟିଏ ପାଇଥିବାରୁ ପୁତ୍ରଟିର ନାମକରଣ କରାଗଲା ସତ୍ୟନାରାୟଣ । ଶିଶୁ ଅବସ୍ଥାରୁ ସତ୍ୟନାରାୟଣ ଥିଲେ ଅଭାଗା । କାରଣ ଏନ୍ତୁଡ଼ିଶାଳରେ ସପ୍ତମ ଦିନରେ ସେ ମାତା ସୁନାମଣି ଦେବୀଙ୍କୁ ହରାଇ ବସିଲେ । ଏହି ଦୁଃଖ ଘଟଣାକୁ ସତ୍ୟନାରାୟଣ ରାଜଗୁରୁ ତାଙ୍କ ଜୀବନ ଚରିତ "ମୋ ଜୀବନ ସଂଗ୍ରାମ" ଗ୍ରନ୍ଥରେ ଉଲ୍ଲେଖ କରି କହନ୍ତି–"ସେଦିନ ଆମ ଗୃହରେ କି ଆନନ୍ଦ ଉତ୍ସବ । କିନ୍ତୁ ଏଥିର ସାତଦିନ ପରେ ମୋର୍ ମା'ଙ୍କର ଅକାଳ ବିୟୋଗ ସେହି ଆନନ୍ଦକୁ ନିରାନନ୍ଦରେ ପରିଣତ କଲା । ମୁଁ ମାତୃହୀନ ହେଲି ; କିନ୍ତୁ ମୋର ପିତାମହୀ ଏବଂ ତାଙ୍କର ବିଧବାକନ୍ୟା ବିମଳାଙ୍କର ଯତ୍ନରେ ମୋର ଶୈଶବକାଳ ନିରାପଦରେ ଅତିବାହିତ ହେଲା । ଗୋଟିଏ ଶୁଦ୍ରଧାତ୍ରୀ ମୋତେ ନିତ୍ୟ ନିୟମିତ ପ୍ରକାରେ କ୍ଷୀର ପାନ କରାଇଲେ ।"

ସତ୍ୟନାରାୟଣ ରାଜଗୁରୁ ଶୈଶବରୁ ଥିଲେ ତୀକ୍ଷ୍ଣଧୀ–ଶକ୍ତି ସମ୍ପନ୍ନ । ବାଇଶରୀ ବର୍ଷ ବୟସରେ ଉପନୀତ ହୋଇ ସୁଦ୍ଧା ସେ ଦଶମାସ ବୟସର କଥାକୁ ଯେଉଳି ମନେ ରଖିପାରିଥିଲେ ଏହା ତାଙ୍କର ଗଭୀର ସ୍ମୃତିର ପରିଚୟ ପ୍ରଦାନ କରିଛି କହିବା ଭୁଲ ହେବ ନାହିଁ । ଶିଶୁ ରାଜଗୁରୁ ପାଞ୍ଚବର୍ଷ ବୟସରେ ବିଦ୍ୟାରମ୍ଭ କରିଥିଲେ । ସେହି ସମୟରେ ତାଙ୍କର ପ୍ରଥମ ଶିକ୍ଷାଗୁରୁ ଥିଲେ ନରସିଂହ ମିଶ୍ର । ଶିଶୁ ରାଜଗୁରୁ ସ୍ଥାନୀୟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ (ସେମ୍ପତି ଶ୍ୟାମ ସୁନ୍ଦର ରାଜଗୁରୁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ)ରେ ଅଧ୍ୟୟନ କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲାପରେ ତାଙ୍କର ସମସ୍ତ ଦାୟିତ୍ୱ ବିଧବା ପିଉସୀନାନୀ ଉପରେ ନ୍ୟସ୍ତ ରହୁଥିଲା । ମାଆ ଛେଉଣ୍ଡ ସତ୍ୟନାରାୟଣଙ୍କୁ ଅତି ଆଦରରେ ସେ ପାଳନ କରୁଥିଲେ । ଏପରିକି ଗେଲବସରିଆ ସତ୍ୟନାରାୟଣଙ୍କୁ ସେ ନିଜ ହାତରେ ଖୁଆଇ ଦେଉଥିଲେ । ଖୁଆଇଲା ବେଳେ ସେ ବିଭିନ୍ନ ପୁରାଣ ଶାସ୍ତ୍ରର କଥାଗୁଡ଼ିକ ତାଙ୍କରି ଆଗରେ ବ୍ୟକ୍ତ କରୁଥିଲେ । ଛୋଟ ବୟସରୁ ସତ୍ୟନାରାୟଣ ପିଉସୀନାନୀଙ୍କଠାରୁ ଗପ ଶୁଣି ଶୁଣି ନିଜଘରେ ଥିବା ତାଳପତ୍ର ପୋଥିସବୁ ପଢ଼ିବାକୁ ଆରମ୍ଭ କଲେ । ଏପରି ଭାବରେ ସେ ଶାସ୍ତ୍ର ଅଧ୍ୟୟନ ପ୍ରତି ଆଗ୍ରହୀ ହୋଇ ଉଠିଲେ । ନିଜ ବାଲ୍ୟ ଜୀବନର ସ୍ମୃତିଚାରଣ କରି ସେ ନିଜେ କହନ୍ତି–"ପିଲାଦିନେ ମୁଁ ହାତରେ ଖାଇବା ଶିଖିନଥିଲି । ମୋର ବିଧବା ପିଉସୀନାନୀ ପ୍ରତିଦିନ ମୋତେ ଖୁଆଇ ଦିଅନ୍ତି । ସେତେବେଳେ ସେ , ମୋତେ ରାମାୟଣ, ମହାଭାରତରୁ ଆଖ୍ୟାନଗୁଡ଼ିକ ଗଳ୍ପ ଛଳରେ କହନ୍ତି । ତା' ଶୁଣିବାକୁ ମୋର ଆଗ୍ରହ ଦିନକୁ ଦିନ ବଢ଼ିବାକୁ ଲାଗିଲା । ମୁଁ ନିଜେ ଆମଘରେ ଥିବା ତାଳପତ୍ର ପୋଥି ଫିଟାଇ ରାମାୟଣ ପଢ଼ିବାକୁ ଆରମ୍ଭ କଲି । ଜେଜେ ବାପା ଏଥିରେ ମୋତେ ଉତ୍ସାହିତ କଲେ । କ୍ରମେ ତାଳପତ୍ର ପୋଥି ପଢ଼ିବା ଅଭ୍ୟାସ ମୋର ବଢ଼ିବାକୁ ଲାଗିଲା । ମୋର ପୁରାଣ ପଢ଼ିବା ଦେଖି ଜେଜେମା ଓ ପିଉସୀନାନୀମାନେ ଆଗ୍ରହରେ ମହାଭାରତ ପଢ଼ିବାକୁ ମୋତେ କହିଲେ । ମୁଁ ମଧ୍ୟ ସ୍କୁଲପାଠ ପଢ଼ିବା ଓ ଟିଉସନ୍ ମାଷ୍ଟରଙ୍କ ଘରକୁ ନିୟମିତ ଭାବରେ ଯିବାରେ ଅବହେଳା କଲି । ଟିଉସନ୍ ମାଷ୍ଟର ବିରକ୍ତ ହୋଇ ମୋର ନନାଙ୍କୁ ଏକଥା କହିଲେ । ମୋତେ ସାବଧାନ କରାଇ ଦେଲେ । ତଥାପି ପୁରାଣ ପାଠରୁ ମୁଁ ନିବୃତ୍ତ ହେଲି ନାହିଁ ।"

ଛାତ୍ର ସତ୍ୟନାରାୟଣ ପୁରାଣ ଶାସ୍ତ୍ର ଅଧ୍ୟୟନ କରିବା ସହ ଇତିହାସ ସମ୍ପର୍କରେ ମଧ୍ୟ ସବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ସେ ଯେତେବେଳେ ମାଟ୍ରିକ୍ ଶ୍ରେଣୀର ଛାତ୍ର, ସେହି ସମୟରେ ବ୍ରିଟିଶ୍ ଇତିହାସର ବଡ଼ ବଡ଼ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ଇତିହାସ ଅଧ୍ୟୟନ ସମୟରେ ସାହିତ୍ୟ ପ୍ରତି ତାଙ୍କର ବିଶେଷ ଆଗ୍ରହ ଲକ୍ଷ୍ୟ କରାଯାଉଥିଲା । 'ମନୋରମା' କାବ୍ୟ ହେଉଛି ତାଙ୍କ କବି ପ୍ରତିଭାର ଅପ୍ରାନ ସ୍ୱାକ୍ଷର ।

ସତ୍ୟନାରାୟଣ ରାଜଗୁରୁଙ୍କର ଅବଦାନ ଓଡ଼ିଆ, ଇଂରାଜୀ ଓ ତେଲୁଗୁ ପ୍ରବନ୍ଧ ସାହିତ୍ୟକୁ ଯଥେଷ୍ଟ କହିବା ଅସଙ୍ଗତ ମନେ ହେବ ନାହିଁ । ସେ ଯେତେବେଳେ ସତେଇଶ ବର୍ଷ ବୟସରେ ଉପନୀତ, ସେହି ସମୟରେ ସେ ଓଡ଼ିଆ, ଇଂରାଜୀ ଏବଂ ତେଲୁଗୁ ଭାଷାରେ ଗବେଷଣାମୂଳକ ପ୍ରବନ୍ଧମାନ ରଚନା କରି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ କରାଉଥିଲେ । କେବଳ ଏତିକି ନୁହେଁ, ନାଟ୍ୟକାର ହିସାବରେ ,ସେ ପାରଳା ଓ ତା'ର ଆଖପାଖ ଅଞ୍ଚଳରେ ବେଶ୍ ଜଣାଶୁଣା । ତତ୍କାଳୀନ ସମୟରେ ତାଙ୍କ ରଚିତ 'ରାଧାଭିଷେକ'

ଗୀତିନାଟ୍ୟ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲା । ଏତଦ୍‌ବ୍ୟତୀତ 'କଳିଙ୍ଗବିଜୟ', 'ଖାରବେଳ', 'କର୍ଣ୍ଣାଟକୁମାରୀ', 'ଗଜପତି', 'ଧର୍ମରାଜ' ପ୍ରଭୃତି ନାଟକର ରଚୟିତା ଭାବରେ ସେ ଥିଲେ ପ୍ରଶଂସନୀୟ ।

୧୯୪୭ ମସିହାଥିଲା ରାଜଗୁରୁଙ୍କ ପାଇଁ ଏକ ସ୍ମରଣୀୟ ମସିହା । ଏହି ବର୍ଷ ସେ ଶୃଙ୍ଖଳି କ୍ଷେତ୍ରରେ ପ୍ରବେଶ କଲେ ଓ 'କଳିଙ୍ଗ ଐତିହାସିକ ଗବେଷଣା ସମିତି'ରେ ଯୋଗଦେଲେ । ୧୯୫୦ ମସିହାରେ ଓଡ଼ିଶା ସଂଗ୍ରହାଳୟରେ ସେ ନିଯୁକ୍ତି ଲାଭ କରି ଅଭିଲେଖ ବିଭାଗର ଦାୟିତ୍ୱ ଗ୍ରହଣ କଲେ । ଏହି ବିଭାଗର ଦାୟିତ୍ୱରେ ରହିବା ଫଳରେ ସେ ବିଭିନ୍ନ ଅଞ୍ଚଳରୁ ଆବିଷ୍କୃତ ଅଭିଲେଖମାନ ପାଠ କରି ଅବଲୁପ୍ତ ଇତିହାସର ତଥ୍ୟକୁ ପ୍ରକାଶ କରିଥିଲେ । ତାଙ୍କ ରଚିତ Inscriptions of Orissa, Invocatory verses from Inscriptions, ଓଡ଼ିଶାର ଇତିହାସ, ଗଙ୍ଗ ବଂଶର ଇତିହାସ, କଳିଙ୍ଗର ଆପକଥା, ଓଡ଼ିଆ ଲିପିର କ୍ରମବିକାଶ, ଓଡ଼ିଆ ଉପଭାଷା, ଗୋପବନ୍ଧୁ, ଓଡ଼ିଶାର ସର୍ବପ୍ରଥମ ଗଦ୍ୟ–ଉପନ୍ୟାସ 'ପ୍ରସ୍ତାବ ଚିନ୍ତାମଣି' (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରକାଶିତ), A Brief History of the Gangas of Kalinga, ଜନନୀ ଉତ୍କଳ (କାବ୍ୟ) ପ୍ରଭୃତି ଗ୍ରନ୍ଥ ସାହିତ୍ୟ ଓ ଇତିହାସ ବିଭାଗ ପାଇଁ ଯେ ଅମୂଲ୍ୟ ଦାନ କହିବା ଅସମୀଚୀନ ନୁହେଁ ।

କେବଳ ଏତିକି ନୁହେଁ, ସାହିତ୍ୟ ଓ ଇତିହାସ ସମ୍ପର୍କୀୟ ବିଭିନ୍ନ ତଥ୍ୟପୂର୍ଣ୍ଣ ତଥା ଗବେଷଣାମୂଳକ ପ୍ରବନ୍ଧ ରଚନାରେ ସେ ଜଣେ କୃତବିଦ୍ୟ ଶିଳ୍ପୀ । ତାଙ୍କ ପ୍ରଣୀତ ପ୍ରବନ୍ଧ–(୧) ମାନ୍ଦ୍ରାଜ ଓଡ଼ିଆ ଅଞ୍ଚଳରେ ସେନ୍‌ସସ୍ ବିଭ୍ରାଟ ଜାନୁଆରୀ ୧୯୩୧ ଦୈନିକ ଆଶାରେ ଧାରାବାହିକ ପ୍ରକାଶିତ, (୨) ନରାଜ ଦର୍ଶନ, (ଉତ୍କଳ ସାହିତ୍ୟରେ ପ୍ରକାଶିତ) (୩) ଓଡ଼ିଶା ଦେଶ ମିଶ୍ରଣ ସମ୍ବନ୍ଧେ ପଦେ, (୪) ବସାଳୀ କରଣଙ୍କର ଲିଞ୍ଜିପେରୁ ରହସ୍ୟ, (୫) ମାନ୍ଦ୍ରାଜ ଓଡ଼ିଆ ଅଞ୍ଚଳର ଜାତି ବିଗ୍ରହ, (୬) ଦେଶ ମିଶ୍ରଣରେ ମଞ୍ଜୁଷାର ଭାଗ ନାହିଁକି ?, (ବ୍ରହ୍ମପୁରରୁ ପ୍ରକାଶିତ 'ନବୀନ' ପତ୍ରିକାରେ ପ୍ରକାଶିତ), (୭) ଉତ୍କଳୀୟ ଲିପିତତ୍ତ୍ୱ, (୮ମ ପରିଚ୍ଛେଦ, ସହକାର), (୮) ଓଡ଼ିଶାର ଉନ୍ନତି (ପ୍ରବନ୍ଧ), (୯) ଜଗନ୍ନାଥ ଦାସ (ନାଟକ), (୧୦) ଜନନୀ ଉତ୍କଳ (ଖଣ୍ଡକାବ୍ୟ), (୧୧) ଦେଶ ମିଶ୍ରଣ ସମ୍ବନ୍ଧେ ପଦେ (ଦୈନିକ ଆଶା), (୧୨) ପ୍ରାକୃତିକ ଓଡ଼ିଆ ଭାଷାର ନିର୍ଦ୍ଦେଶ, (୧୩) ଦେଶ ମିଶ୍ରଣର ଇତିହାସ, (୧୪) ଦକ୍ଷିଣ ଓଡ଼ିଶାର ମାନଚିତ୍ର, (୧୫) ରକ୍ତଗୋଲାପ (ଗଳ୍ପ, ସହକାର) (୧୬) History of Eastern Gangas of Kalinga (The Prachee), (୧୭) ଓଡ଼ିଶା ଦେଶ ମିଶ୍ରଣରେ ଦକ୍ଷିଣ ଓଡ଼ିଶାର ଭାଗ (ଉତ୍କଳ ସମ୍ମିଳନୀରେ ପଠିତ) (୧୮) ଚଉଦ୍ୱାରର ପ୍ରତ୍ନତତ୍ତ୍ୱ (ଉତ୍କଳ ସାହିତ୍ୟରେ ପ୍ରକାଶିତ), (୧୯) The Heirographic Inscription of Orissa, (୨୦) Heirographic letters of Naraj (Prachee) (୨୧) The Chronological Account of the Bhanjas of Gumsar (prachee), (୨୨) ଓଡ଼ିଶାର ଦକ୍ଷିଣ ସୀମା (ସହକାର), (୨୩) ଜାପାନର ଅଭ୍ୟୁନ୍ନତି, (୨୪) The Odras and their Predominancy (prachee), (୨୫) The Census Evvor (୨୬) ଉତ୍କଳର ଜାତି ବିଜ୍ଞାନ, (୨୭) ଓଡ଼ିଶାର ଆଦିମ ଜାତି ବିଜ୍ଞାନ, (୨୮) ଉତ୍କଳର ପ୍ରାଚୀନ ସରକା ଜାତି (ଉତ୍କଳ ସାହିତ୍ୟ), (୨୯) ଓଡ଼ିଶାର କର୍ତ୍ତବ୍ୟ କର୍ମ (ଦୈନିକ ଆଶା), (୩୦) ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ, (୩୧) ଓଡ଼ିଶାର ଦକ୍ଷିଣ ସୀମା (ସହକାର) ପ୍ରଭୃତି ହେଉଛି ଅନ୍ୟତମ ।

ସତ୍ୟନାରାୟଣ ରାଜଗୁରୁ ତାଙ୍କ ଜୀବଦ୍ଦଶା ମଧ୍ୟରେ ଓଡ଼ିଶା ସରକାରଙ୍କର ବିଭିନ୍ନ ବିଭାଗରେ କାର୍ଯ୍ୟ ସମ୍ପାଦନ ଅତି ଦକ୍ଷତାର ସହ କରିଯାଇଛନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କର ଜ୍ଞାନ ଓ ବିଦ୍ୟାକୁ ସମ୍ମାନ ଜଣାଇ ତାଙ୍କୁ ଡି.ଲିଟ୍ ଉପାଧିରେ ଭୂଷିତ କରିବା ସଙ୍ଗେ ସଙ୍ଗେ ସିନେଟ୍‌ର ଆଜୀବନ ସଭ୍ୟ ରୂପେ ତାଙ୍କୁ ଗ୍ରହଣ କରିଅଛନ୍ତି । ଏହାଛଡ଼ା ଡକ୍ଟର ରାଜଗୁରୁଙ୍କ ଗବେଷଣାଲବ୍ଧ ଜ୍ଞାନକୁ ସ୍ୱୀକାର କରି ଭାରତ ସରକାର ୧୯୭୪ ମସିହାରେ ତାଙ୍କୁ ପଦ୍ମଶ୍ରୀ ଉପାଧି ପ୍ରଦାନ କରିଛନ୍ତି । ଏତଦ୍‌ବ୍ୟତୀତ ସେ ଆନ୍ଧ୍ରପ୍ରଦେଶରୁ 'ଭାରତଭୂଷଣ' ଉପାଧି ମଧ୍ୟ ପ୍ରାପ୍ତ ହୋଇଛନ୍ତି ।

ଦୀର୍ଘ ୯୪ ବର୍ଷ ବୟସରେ ଉପନୀତ ଥାଇ ସୁଦ୍ଧା ଡକ୍ଟର ରାଜଗୁରୁ ହ୍ୱିଲ୍ ଚେୟାରରେ ବସି ମଧ୍ୟ ଇତିହାସର ପୃଷ୍ଠା ଓଲଟାଇବା ଛାଡ଼ିନାହାନ୍ତି । ଏଥିରୁ ତାଙ୍କର ଇତିହାସଲବ୍ଧ ଜ୍ଞାନ ଓ ପିପାସା ଯେ କେତେ ଗଭୀର ତାହା ପାଠକେ ହୃଦୟଙ୍ଗମ କରିବା କଥା । ଏହି ପୁଣ୍ୟାତ୍ମା ତଥା ଉତ୍କଳର ବରପୁତ୍ର ଡକ୍ଟର ରାଜଗୁରୁ ସଂସ୍କୃତ ବିଶ୍ୱବିଦ୍ୟାଳୟ (ପୁରୀ)ରେ କାର୍ଯ୍ୟରତ ଥାଇ ୧୯୯୭ ମସିହାରେ ଇହଧାମ ତ୍ୟାଗ କରିଛନ୍ତି । ଓଡ଼ିଶାର ଇତିହାସ, ସାହିତ୍ୟ, ସଂସ୍କୃତି, ଲିପି, ପ୍ରତ୍ନତତ୍ତ୍ୱ ଯେତେଦିନ ପର୍ଯ୍ୟନ୍ତ ସାଇତା ହୋଇ ରହିଥିବ ସେତେଦିନ ଯାଏଁ ସତ୍ୟନାରାୟଣ ରାଜଗୁରୁଙ୍କର ମୃତ୍ୟୁ ନାହିଁ, ଏହା କହିଲେ କେହି ଦ୍ୱିମତ ହେବେ ନାହିଁ ।

---

**ବିଭାଗୀୟ ମୁଖ୍ୟ,**
**ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,**
**ମା' ମାର୍କମା ମହାବିଦ୍ୟାଳୟ,**
**ବିଷମ କଟକ (ରାୟଗଡ଼ା)–୭୬୫୦୧୯**

# ଆଧୁନିକ ଶିକ୍ଷକ ଓ ସମାଜ

ପ୍ରଫେସର ଜଗନ୍ନାଥ ମହାନ୍ତି

ଆମର ଜାତୀୟ ଶିକ୍ଷାନୀତି (୧୯୮୬/୧୯୯୨) ଯଥାର୍ଥରେ କହିଛି, "ସମାଜର ସାମାଜିକ ଓ ସାଂସ୍କୃତିକ ମୂଲ୍ୟବୋଧ ଅନୁସାରେ ଶିକ୍ଷକଙ୍କର ପଦମର୍ଯ୍ୟାଦା ନିରୂପିତ ହୋଇଥାଏ। କୁହାଯାଇଥାଏ ଯେ ଗୋଟିଏ ଜାତି ତାର ଶିକ୍ଷକଙ୍କ ସ୍ତର ଉପରକୁ ଉଠିପାରେ ନାହିଁ। ତେଣୁ ସରକାର ଓ ସମାଜ ଶିକ୍ଷକମାନଙ୍କୁ ଗଠନମୂଳକ ଓ ସୃଜନାତ୍ମକ ଧାରାରେ କାର୍ଯ୍ୟ କରିବା ପାଇଁ ଉପଯୁକ୍ତ ପରିବେଶ ସୃଷ୍ଟି କରିବାରେ ପ୍ରେରଣା ଯୋଗାଇବା ଉଚିତ ଏବଂ ଏଥି ପାଇଁ ସମାଜ ଓ ସରକାର ଅନୁକୂଳ ସୁବିଧାସୁଯୋଗ ପ୍ରଦାନ କରିବା ଦରକାର।" ଶିକ୍ଷକଙ୍କ ସମ୍ମାନ ଓ ଦକ୍ଷତା ବୃଦ୍ଧି ଉପରେ ଶିକ୍ଷାର ବିକାଶ ଓ ଶିକ୍ଷାର ବିକାଶ ଉପରେ ଜାତୀୟ ସମୃଦ୍ଧି ତଥା ସଫଳତା ନିର୍ଭର କରିଥାଏ।

ପୂର୍ବେ ଜ୍ଞାନ ପ୍ରଦାନ ହିଁ ଥିଲା ଶିକ୍ଷକଙ୍କର ମୁଖ୍ୟ କାର୍ଯ୍ୟ। ଅବଶ୍ୟ ତାହା ଯେ ଗୁରୁତ୍ୱପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ। ମାତ୍ର ଶିକ୍ଷକ ଆଉ ଜ୍ଞାନ ବିତରଣର ଏକମାତ୍ର ଉତ୍ସ ହୋଇ ରହିନାହିଁ। ଆଜିର ବିଜ୍ଞାନ ଓ କାରିଗରି ଯୁଗରେ ବୈଦ୍ୟୁତିକ ଗଣମାଧ୍ୟମର ପ୍ରସାର ଫଳରେ ଶିକ୍ଷା ଏବେ "ସହସ୍ରଧାରା"ରେ ପରିଣତ ହୋଇଛି। ତେଣୁ ସମ୍ପ୍ରତି ଶିକ୍ଷକ କେବଳ ଜ୍ଞାନ ପ୍ରଦାନରେ ସନ୍ତୁଷ୍ଟ ରହିଲେ ଚଳିବ ନାହିଁ। ସେ ଶିକ୍ଷାଦାନ ବ୍ୟତୀତ ଅନ୍ୟାନ୍ୟ ପାଠ୍ୟ ପରିପୂରକ କାର୍ଯ୍ୟକ୍ରମ ଯଥା ସଭାସମିତିର ଆୟୋଜନ, ପାଠଚକ୍ର ଓ ସମାଜର ସଂଗଠନ, କ୍ରୀଡ଼ା ଓ ଉଦ୍ୟାନକର୍ମ, ପତ୍ରପତ୍ରିକା ପ୍ରକାଶନ, ପର୍ଯ୍ୟଟନ ଓ ଗବେଷଣା, ତର୍କସଭା ଓ ଜାତୀୟ ପର୍ବ ପାଳନ ଇତ୍ୟାଦିରେ ମଧ୍ୟ ସକ୍ରିୟ ଭାଗନେବା ଉଚିତ। ଏଗୁଡ଼ିକର ଶୈକ୍ଷିକ ମୂଲ୍ୟକୁ ସେ ହୃଦୟଙ୍ଗମ କରିବା ଓ କରାଇବା ଉଚିତ। ତେଣୁ ସେଗୁଡ଼ିକର ଯଥାଯଥ ଯୋଜନା ଓ ପରିକଳ୍ପନା, ସଂଗଠନ ଓ ମୂଲ୍ୟାୟନ ହେବା ନିତାନ୍ତ ଦରକାର। କାରଣ ସେଗୁଡ଼ିକର ସଫଳତା ଉପରେ ନିର୍ଭର କରେ ଛାତ୍ରଛାତ୍ରୀମାନଙ୍କର ବ୍ୟକ୍ତିତ୍ୱର ବିକାଶ।

ଶିକ୍ଷାନୁଷ୍ଠାନଗୁଡ଼ିକରେ ନୂଆନୂଆ କାର୍ଯ୍ୟ (Innovation) କରି ଆମେ ଶିକ୍ଷାକୁ ସରସ ଓ ସାର୍ଥକ କରାଇବା ଉଚିତ। କାରଣ ଗତାନୁଗତିକ ଭାବରେ ଶିକ୍ଷାଦାନ ନକରି ଆମେ ନୂଆ ନୂଆ ପଦ୍ଧତିରେ ଅଧ୍ୟାପନା କରିବା ଉଚିତ। ଦୃଷ୍ଟାନ୍ତ ସ୍ୱରୂପ, ଅନେକ ସମୟରେ ଆମେ ଉପର ଶ୍ରେଣୀରେ ବକ୍ତୃତା ଦେଇ କିମ୍ବା ପାଠ୍ୟପୁସ୍ତକର ପ୍ରସଙ୍ଗମାନଙ୍କୁ ଆଲୋଚନା କରି ଆମର ଶିକ୍ଷାଦାନ କର୍ତ୍ତବ୍ୟ ସାଙ୍ଗ କରୁ। କିନ୍ତୁ ଛାତ୍ରଛାତ୍ରୀମାନଙ୍କୁ କୌଣସି ପ୍ରସଙ୍ଗର ବିଭିନ୍ନ ଦୃଷ୍ଟିକୋଣରୁ ଗୋଟିଏ ଲେଖା ନିବନ୍ଧ ଲେଖି ଛାତ୍ରଛାତ୍ରୀଗଣ ସମ୍ପୃକ୍ତ ଶିକ୍ଷକଙ୍କ ଅଧ୍ୟକ୍ଷତାରେ ଉପସ୍ଥାପନ ଓ ଆଲୋଚନା କରିବେ କିମ୍ବା କୌଣସି ଭୌଗୋଳିକ, ଐତିହାସିକ, ବୈଜ୍ଞାନିକ କିମ୍ବା ସାମ୍ପ୍ରତିକ ଗୁରୁତ୍ୱ ଥିବା ସ୍ଥାନକୁ ପରିଭ୍ରମଣରେ ନେଇପାରିବେ ଅଥବା ଗୋଷ୍ଠୀଗତ ଅନୁଧ୍ୟାନ ତଥା ସର୍ବେକ୍ଷଣ କରି ଏକ ବିବରଣୀ ପ୍ରସ୍ତୁତ ଓ ପରିବେଷଣ କରିପାରିବେ। ଆଜିର ଗଣମାଧ୍ୟମ ଯୁଗରେ ଶିକ୍ଷାଦାନକୁ କେବଳ ଏକମାତ୍ର ମାଧ୍ୟମ "ବଚନ" ସହିତ ରେଡ଼ିଓ, ଟେଲିଭିଜନ, ଭିଡ଼ିଓ ଓ ଅଡ଼ିଓ କାର୍ଯ୍ୟକ୍ରମ, ଫିଲିମ୍ ଓ ଫିଲିମ୍ ଷ୍ଟ୍ରିପ୍, ଏମିତିକି ସ୍ଲାଇଡ୍ ଆଦିର ସଦୁପଯୋଗ କରିବା ଉଚିତ। କାରଣ କେବଳ କଥନ ମାଧ୍ୟମ ଆଜିର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଆଦୃତ ହେବନାହିଁ। ସେଥିପାଇଁ ଉପରୋକ୍ତ ଜାତୀୟ ଶିକ୍ଷାନୀତିରେ କୁହାଯାଇଛି, "ଶିକ୍ଷକଗଣ ନୂଆନୂଆ କାର୍ଯ୍ୟ କରିବା, ଯୋଗାଯୋଗର ଉପଯୁକ୍ତ ପଦ୍ଧତିର ପ୍ରୟୋଗ ଏବଂ ସମାଜର ଆବଶ୍ୟକତା ଓ ଦକ୍ଷତାନୁସାରେ ବିବିଧ କାର୍ଯ୍ୟକ୍ରମର ସଂଗଠନ କରିବାରେ ସ୍ୱାଧୀନତା ଉପଭୋଗ କରିବା ଆବଶ୍ୟକ।"

ଶିକ୍ଷକ କେବଳ ଜ୍ଞାନର ଗନ୍ତାଘର ବା ଜ୍ଞାନପ୍ରଦାନର ସଜୀବ ମାଧ୍ୟମ ହେଲେ ଚଳିବ ନାହିଁ। ସେ ନିଜ ବିଷୟଟିରେ ସମ୍ୟକ୍ ଓ ସମୟୋପଯୋଗୀ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ଜ୍ଞାନ ବିତରଣ ପାଇଁ ଉପଯୁକ୍ତ ସାମର୍ଥ୍ୟ ଓ କୌଶଳ ଲାଭ କରିବା ଦରକାର। ସେ ନିଜେ ବିଷୟଟିକୁ ଶ୍ରଦ୍ଧା କରିବା ସହିତ ଅନ୍ୟ ଆନୁଷଙ୍ଗିକ ବିଷୟଗୁଡ଼ିକ ସମ୍ପର୍କରେ ଚଳନୀୟ ଜ୍ଞାନ ଓ ଧାରଣା ରହିବା ଉଚିତ। କାରଣ ଆଧୁନିକ ବିଷୟମାନ ପରସ୍ପର ସମ୍ପର୍କଶୀଳ ଓ ପରିପୂରକ। ନିଜ ବିଷୟଟିରେ ସବୁ ଜାଣି ଅନ୍ୟ ବିଷୟଗୁଡ଼ିକରେ ସମ୍ପୂର୍ଣ୍ଣ ଅଜ୍ଞ ରହିବା ଅନୁଚିତ। ସେଥିପାଇଁ ଅଧ୍ୟାପକ ପ୍ରଶିକ୍ଷଣ ମହାବିଦ୍ୟାଳୟ (Academic Staff College) ପ୍ରଭୃତିରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (UGC) ଅଧ୍ୟାପକମାନଙ୍କୁ କେବଳ ନିଜନିଜ ବିଷୟରେ ସଂଜୀବନ ପାଠ୍ୟକ୍ରମ (Refresher Course) ବ୍ୟତୀତ ଅନେକ ଆଧୁନିକ ବିଷୟରେ ଜ୍ଞାତବ୍ୟ ପ୍ରସଙ୍ଗକୁ ନେଇ Orientation Course ନବୀକରଣ ପାଠ୍ୟକ୍ରମର ବ୍ୟବସ୍ଥା କରିଛନ୍ତି। ପୂର୍ବେ ତ ଥରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ପାଇ କୌଣସି ଚାକିରିରେ ପଶିଗଲେ ଆଉ କିଛି ଶିକ୍ଷା ବା ତାଲିମର ଆବଶ୍ୟକତା

ନଥିଲା । ଏବେ କିନ୍ତୁ ସେବାକାଳୀନ ଶିକ୍ଷା ସମସ୍ତ ପ୍ରକାର ଚାକିରି ବିଶେଷତଃ ଶିକ୍ଷାବିଭାଗୀୟ ଚାକିରି ପାଇଁ ଏକାନ୍ତ ଆବଶ୍ୟକ ହୋଇପଡ଼ିଛି ।

ମାନସିକ ପ୍ରସ୍ତୁତି ଓ ପାରଦର୍ଶିତା ବ୍ୟତୀତ ଶିକ୍ଷକଙ୍କର କେତେକ ଆବେଗିକ ଓ ମନସ୍ତାତ୍ତ୍ୱିକ ମାଂସପେଶୀୟ ସାମର୍ଥ୍ୟ ନିତାନ୍ତ ଦରକାର । ଦୃଷ୍ଟାନ୍ତ ସ୍ୱରୂପ, ଶିକ୍ଷକ ନିଜର ବୃତ୍ତି, ଶିକ୍ଷାନୁଷ୍ଠାନ, ତାର ବ୍ୟକ୍ତିଗଣ, ବିଶେଷତଃ ଛାତ୍ରଛାତ୍ରୀମାନଙ୍କ ପ୍ରତି ବିଶେଷ ଶ୍ରଦ୍ଧାବାନ ହେବା ଉଚିତ । କାରଣ ଶିକ୍ଷକ ଶ୍ରଦ୍ଧାବଳରେ ନିଜ ଶିକ୍ଷାଦାନରେ ଆନନ୍ଦ, ଜ୍ଞାନ ଆହରଣରେ ଆତ୍ମବିଶ୍ୱାସ ଓ ଛାତ୍ରଛାତ୍ରୀମାନଙ୍କଠାରୁ ସମ୍ମାନ ଲାଭ କରିପାରିବେ । ଶିକ୍ଷାନୁଷ୍ଠାନ ଓ ଶ୍ରେଣୀ ମଧ୍ୟରେ ଶୃଙ୍ଖଳାରକ୍ଷା କରିବାଠାରୁ ଆରମ୍ଭ କରି ପାରସ୍ପରିକ ସ୍ନେହ, ସମ୍ମାନ ଓ ସୌହାର୍ଦ୍ଦ୍ୟର ଏକ ବାତାବରଣ ପର୍ଯ୍ୟନ୍ତ ଗଢ଼ିଉଠିବା ସମ୍ଭବପର ହେବ । ଆନ୍ତଃମାନବିକ ସମ୍ପର୍କ (Inter-human Relationship), ସୁସମ୍ପର୍କ (Rapport), ସହଯୋଗ (Co-operation) ଓ ସଦିଚ୍ଛାର ସୃଷ୍ଟି ଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ ଏକାନ୍ତ ଆବଶ୍ୟକ । ଶିକ୍ଷକ ନିଜ ଆଚରଣକୁ ଶୁଦ୍ଧ ଓ ସ୍ନେହସିକ୍ତ କରାଇ ପାରିଲେ, ସେମାନେ ସନ୍ତୋଷ ଓ ସାଫଲ୍ୟ ଲାଭ କରିବା ସଙ୍ଗେ ସଙ୍ଗେ ଶିକ୍ଷକ ଓ ଛାତ୍ର ସମାଜ, ଅଭିଭାବକ ଓ ପରିଚାଳକମାନଙ୍କର ଆସ୍ଥାଭାଜନ ଓ ସମ୍ମାନାସ୍ପଦ ହୋଇ ପାରିବେ ।

ଆଜିର ଶିକ୍ଷକ ଯଥାର୍ଥରେ ସମାଜର ବିଶେଷତଃ ଛାତ୍ର ସମାଜର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ । ସେ ଶିକ୍ଷାଦାନ କରିବା ସହିତ ଛାତ୍ରଛାତ୍ରୀମାନଙ୍କ ବ୍ୟକ୍ତିତ୍ୱର ବହୁମୁଖୀ ବିକାଶ ଦିଗରେ ବିଭିନ୍ନ କାର୍ଯ୍ୟକ୍ରମ ସଂଗଠନ କରିବେ । ତାଙ୍କର ସମ୍ବେଦନା, ସହୃଦୟତା, ସହଯୋଗ ଓ ଶ୍ରଦ୍ଧାଳୁ ଆଚରଣ ଛାତ୍ରଛାତ୍ରୀଙ୍କ ମନରେ ତାଙ୍କପ୍ରତି ବିଶ୍ୱାସ, ଭକ୍ତି ଓ ସୌହାର୍ଦ୍ଦ୍ୟ ସୃଷ୍ଟି କରିପାରିବ । ତାଙ୍କର ନେତୃତ୍ୱ ପୂର୍ବପରି ସ୍ୱେଚ୍ଛାଚାରୀ ନ ହୋଇ ଗଣତାନ୍ତ୍ରିକ ହେବା ବାଞ୍ଛନୀୟ । ସେ କୌଣସି କଥା ବାଧ୍ୟତାମୂଳକ ଭାବରେ ଛାତ୍ରଛାତ୍ରୀ ତଥା ଅଭିଭାବକମାନଙ୍କ ଉପରେ ଲଦି ନଦେଇ ତା'ର, ଆବଶ୍ୟକତା ଓ ଉପାଦେୟତା ବୁଝାଇଦେବା ଉଚିତ ।ସେଥିପାଇଁ କୁହାଯାଏ ଯେ ଆତ୍ମଶୃଙ୍ଖଳା ହେଉଛି ସର୍ବଶ୍ରେଷ୍ଠ ଶୃଙ୍ଖଳା । ଶିକ୍ଷକ ଯଥାର୍ଥରେ ଜ୍ଞାନଗରିମା, ସଦାଚାର ଓ ମାନବବାଦୀ ଭାବଧାରାରେ ସମସ୍ତଙ୍କର ଆଦର୍ଶ ଓ ପ୍ରେରଣାଦାୟୀ ହେବା ଦରକାର । ତାଙ୍କ ବ୍ୟକ୍ତିତ୍ୱର ଯାଦୁକରୀ ସ୍ପର୍ଶ ଛାତ୍ରଛାତ୍ରୀଗଣଙ୍କୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରି ପାରିଲେ ଆଧୁନିକ ଶିକ୍ଷା ନିଶ୍ଚୟ ସାର୍ଥକ ଓ ସଫଳ ହୋଇ ପାରିବ । ଆଧୁନିକ ସମାଜ ତଥା ଶିକ୍ଷାନୁଷ୍ଠାନରେ ଯେଉଁପ୍ରକାର ବିଭ୍ରାଟ, ବିଶୃଙ୍ଖଳା ଓ ବ୍ୟଭିଚାର ଅନୁପ୍ରବିଷ୍ଟ ହୋଇଛି, ତାହା ଦୂରୀଭୂତ ହୋଇ ମାନବ ସମାଜ ସୁସ୍ଥ, ସୁଖୀ ଓ ଶାନ୍ତିପ୍ରିୟ ହୋଇପାରିବ ।

ଆମ ଦେଶର ସୁନାମଧନ୍ୟ ଶିକ୍ଷାବିତ୍ କେ.ଜି. ସୟିଦାଇନ୍ ଉପରୋକ୍ତ ମର୍ମରେ କହିଛନ୍ତି ଯେ ଶିକ୍ଷକଙ୍କର ସଫଳତା ମୂଳରେ ଥାଏ ନିଜର କାର୍ଯ୍ୟ ଓ ଛାତ୍ର ସମାଜ ପ୍ରତି ତାଙ୍କର ଶ୍ରଦ୍ଧା । ଏହା ହିଁ ତାଙ୍କ ବ୍ୟକ୍ତିତ୍ୱର କାଉଁରୀ କାଠି । ଏହି ଶ୍ରଦ୍ଧା ହିଁ ସବୁ ବାଧାବିଘ୍ନ ଅପସାରଣ କରି ତାଙ୍କୁ ସେମାନଙ୍କର ନିକଟତର କରିପାରିବ । ସେମାନଙ୍କର ବିଶ୍ୱାସଭାଜନ ହୋଇ ପାରିଲେ, ସେ ସେମାନଙ୍କୁ ସମୁଚିତ ନେତୃତ୍ୱ ଦେଇ ପାରିବେ, ସେମାନଙ୍କର ଚରିତ୍ର ଗଠନରେ ସହାୟକ ହୋଇ ପାରିବେ । ଆଦର୍ଶ ଶିକ୍ଷକ ସତ୍ୟ–ଶିବ–ସୁନ୍ଦରର ଜୀବନ୍ତ ପ୍ରତିମୂର୍ତ୍ତି ନହେଲେ ସେମାନଙ୍କର ପରମ ପୂଜାରୀ ହୋଇ ପାରିବେ । ସେ ନିଜର ଶ୍ରଦ୍ଧା, ସମ୍ବେଦନା ଓ ସୌହାର୍ଦ୍ଦ୍ୟ ବଳରେ ଛାତ୍ରଛାତ୍ରୀମାନଙ୍କୁ ପ୍ରକୃତ ଦିଗଦର୍ଶନ ଦେଇପାରିବେ । ତା ଫଳରେ ସେ ସ୍ୱାର୍ଥାନ୍ଧ ନେତୃବୃନ୍ଦ ଓ ଧର୍ମାନ୍ଧ ବ୍ୟକ୍ତିଗଣଙ୍କର ବିଷଚକ୍ର ଓ ଷଡ଼ଯନ୍ତ୍ରର ନାଗପାଶରୁ ସେମାନଙ୍କୁ ମୁକ୍ତ ରଖି ବ୍ୟକ୍ତିଗତ ତଥା ଜାତୀୟ ଜୀବନକୁ ମଧୁମୟ ଓ ମହିମାମୟ କରିପାରିବେ । ଏହା ହିଁ ଶିକ୍ଷକ ଜୀବନର ସାର୍ଥକତା ଓ ଶିକ୍ଷାର ସଫଳତା ।

---

୨୯୩୫, ଗୌରୀନଗର,
ଭୁବନେଶ୍ୱର–୭୫୧୦୦୨

# ବାଲିପଦରର ବାଲିହରିଣ

ଡଃ ସୁଧାକର କର

ଓଡ଼ିଶା ଉପକୂଳରେ ଗଞ୍ଜାମ ଜିଲ୍ଲାର ବୁଗୁଡ଼ା ବ୍ଲକ୍‌ରେ ବାଲିପଦର ଛୋଟିଆ ଗାଁ ଟିଏ । ଏହି ଗାଁ ଓ ତା'ର ଆଖପାଖର ୩୦ ଗୋଟି ଗାଁର ଲୋକ ସଂଖ୍ୟା ୨୦ ହଜାରରୁ ଊର୍ଦ୍ଧ୍ୱ । ଛୋଟ ବଡ଼ ପାହାଡ଼ର ବୁଦୁବୁଦିଆ ଜଙ୍ଗଲ ସହିତ ଶୁଷ୍କ ଜମି ଧାନ କ୍ଷେତମାନଙ୍କୁ ନେଇ ଏହାର ପ୍ରାକୃତିକ ପରିବେଶ । ଏଠାକାର ମାଟିରେ ବାଲିର ପରିମାଣ ଖୁବ୍ ଅଧିକ ଏବଂ କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ବାଲିର ଢିପମାନ ମଧ୍ୟ ଦେଖିବାକୁ ମିଳେ । ବାଲିପଦର ଗାଁର ଅନତି ଦୂରରେ ପ୍ରାୟ ୮ କି.ମି. ଦୂରତା ଭେଟନଇ ଗାଁ ଅବସ୍ଥିତ (ଆସ୍କା ବ୍ଲକ୍ ଅଧୀନରେ) । ବାଲିପଦର, ଭେଟନଇ ଓ ଆଖ ପାଖର ଗ୍ରାମଗୁଡ଼ିକର ବିଶେଷତ୍ୱ ହେଲା ଏଠାର 'କୃଷ୍ଣସାର' ମୃଗମାନେ



ବାସ କରୁଥିବାରୁ ଏହାର ପ୍ରାଧାନ୍ୟ ଅଧିକ । ଏହି ମୃଗମାନଙ୍କୁ ଲୋକମାନେ ବାଲି ହରିଣ ବୋଲି କହନ୍ତି । ଦେହର ଈଷତ୍ ଧୂସର ରଙ୍ଗ ସହିତ ବାଲିରଙ୍ଗର ସାମଞ୍ଜସ୍ୟ ଥିବାରୁ ଏପରି ନାମ କରଣ କରାଯାଇ ଥିବାର ଅନୁମାନ କରାଯାଏ । ଅଣ୍ଡିରା ହରିଣ କୃଷ୍ଣ ବର୍ଣ୍ଣ ହୋଇଥିବାରୁ ଏହାର ଅନ୍ୟ ନାମ 'କୃଷ୍ଣସାର' । କେହି କେହି ମଧ୍ୟ ଏମାନଙ୍କୁ 'କଳା ବାହୁଟିଆ' କହନ୍ତି । ସଂସ୍କୃତ ଭାଷାରେ ଅଣ୍ଡିରା ହରିଣ କୁ 'ଏଣ' ଓ ମାଈ ହରିଣକୁ 'ଏଣୀ' ବୋଲି କୁହାଯାଏ । ଏଣୀର ଆଖି ଏତେ ସୁନ୍ଦର ଯେ କାବ୍ୟ କବିତାରେ 'ଏଣୀ ନୟନା'ର ବହୁ ଉପମା ଦିଆଯାଇଥାଏ । ଆହୁରି ମଧ୍ୟ ମାଈ ହରିଣମାନଙ୍କୁ କେତେ ଲୋକ 'ଜିଆଦ' ବୋଲି କହନ୍ତି । ଗ୍ରାମବାସୀମାନଙ୍କର ବାଲିହରିଣମାନଙ୍କ ପ୍ରତି ଅତ୍ୟନ୍ତ ସ୍ନେହ ଓ ଆଦର ଥିବାରୁ ସେମାନେ କ୍ଷେତ ବାଡ଼ିରେ ନିର୍ଭୟରେ ବୁଲି ଥାନ୍ତି । ପ୍ରାୟ ୫୦ ବର୍ଷ ହେବ ଏହି ଅଞ୍ଚଳର ଏହି ଜୀବମାନଙ୍କର ବଂଶ ରକ୍ଷା ଓ ବଂଶ ବୃଦ୍ଧି ହୋଇ ପାରିଛି ବୋଲି ବୟସ୍କ ଲୋକମାନଙ୍କଠାରୁ ଶୁଣିବାକୁ ମିଳେ । ବାଲିହରିଣମାନଙ୍କର ଉପସ୍ଥିତି ଏହି ଅଞ୍ଚଳ ପାଇଁ ଶୁଭଦାୟକ ଏବଂ ଶସ୍ୟ କ୍ଷେତ ଫୁଲ ଫଳରେ ଭରିଉଠେ ବୋଲି ଲୋକମାନଙ୍କର ଅଗାଧ ବିଶ୍ୱାସ ।

ଏହି ଜୀବଗୁଡ଼ିକ ବନ୍ୟପ୍ରାଣୀ (ସୁରକ୍ଷା) ଆଇନ, ୧୯୭୨ ଅନୁଯାୟୀ 'ସୁରକ୍ଷିତ ଜୀବ' ଭାବେ ଗ୍ରହଣ କରାଯାଇ ଅଛି ଏବଂ ଓଡ଼ିଶା ସରକାରଙ୍କର ବନ ବିଭାଗ ଏହି ଅଞ୍ଚଳକୁ ୧୯୮୯ ମସିହା ସେପ୍‌ଟେମ୍ବର ମାସରେ 'ଗେମ୍ ରିଜର୍ଭ' ବୋଲି ଘୋଷଣା କରିଥିଲେ । ବନଖଣ୍ଡ ଅଧିକାରୀ ଘୁମୁସର ସାଉଥ୍ ବନଖଣ୍ଡ, ଭଞ୍ଜନଗର ଏହି ଗେମ୍ ରିଜର୍ଭର ସୁପରିଚାଳନା ଓ ଜୀବମାନଙ୍କର ସୁରକ୍ଷା ଦାୟିତ୍ୱରେ ଅଛନ୍ତି ।

ବାଲିହରିଣ ବା କୃଷ୍ଣସାର ମୃଗ ପ୍ରକୃତ ହରିଣଙ୍କଠାରୁ ଅଲଗା । ବିଶେଷତଃ କୃଷ୍ଣସାର ମୃଗମାନଙ୍କର ଶିଙ୍ଗ ଶାଖା ବିହୀନ, ଫମ୍ପା ଓ ଥରେ ଉପୁଡ଼ି ଗଲେ କିମ୍ବା ଭାଙ୍ଗି ଗଲେ ଆଉଥରେ ଉଠୁନଥିବା ବେଳେ ହରିଣମାନଙ୍କର ଶିଙ୍ଗ ଶାଖାଯୁକ୍ତ, ନିଦା ଓ ଉପୁଡ଼ିଗଲେ ନୂଆକରି ଉଠେ । ଆମ ଦେଶରେ ନୀଳଗାଈ, ଚଉଶିଙ୍ଗା, ଚିଙ୍କୁ ଓ କୃଷ୍ଣସାର ମୃଗଙ୍କୁ ଆଣ୍ଟେଲୋପ (Antelope)ର ଶ୍ରେଣୀଭୁକ୍ତ କରାଯାଇଥାଏ । ଆମ ରାଜ୍ୟରେ ଚିଙ୍କୁ ବ୍ୟତୀତ ଅନ୍ୟ ତିନି ଜାତୀୟ ଆଣ୍ଟେଲୋପ ଦେଖିବାକୁ ମିଳନ୍ତି । ଏମାନଙ୍କ ମଧ୍ୟରେ ନୀଳଗାଈ ସବୁଠାରୁ ବଡ଼ । ସେହିପରି ଓଡ଼ିଶାରେ ଚାରି ଜାତୀୟ ହରିଣ (Deer Species) ଯଥା—ସମ୍ବର, ସ୍ପଟେଡ୍ ଡିଅର ବା ଚିତଳ, ମୁଣ୍ଟଯାକ ବା ବାର୍କିଙ୍ଗ୍ ଡିଅର, ମାଉସ ଡିଅର ବା ବାରଶିଙ୍ଗା ।

ଆମ ଦେଶରେ ବାଲିହରିଣମାନଙ୍କର ସଂଖ୍ୟା ପ୍ରାୟ ୧୦,୦୦୦ରୁ ଊର୍ଦ୍ଧ୍ୱ । ତାମିଲନାଡୁ, ଆନ୍ଧ୍ରପ୍ରଦେଶ, ମଧ୍ୟପ୍ରଦେଶ, ଗୁଜୁରାଟ ଓ ରାଜସ୍ଥାନରେ ଏମାନେ ବେଶୀ ସଂଖ୍ୟାରେ ଦେଖା ଯାଆନ୍ତି । ପୂର୍ବେ ଓଡ଼ିଶାର ସବୁ ଖୋଲା ଜଙ୍ଗଲରେ ବାଲିହରିଣ ଦେଖା ଯାଉଥିଲେ । ସ୍ୱର୍ଗତ ପଦ୍ମାରବିନ୍ଦ ମହାପାତ୍ର ଯେ କି ଓଡ଼ିଶାର ବନ ବିଭାଗରେ ଜଣେ ଉଚ୍ଚ ପଦସ୍ଥ ଅଧିକାରୀ ଥିଲେ ତାଙ୍କର ୧-୧୨-୧୯୮୬ ମସିହାର ଦୈନିକ ସମ୍ବାଦରେ ପ୍ରକାଶିତ ଏକ ଲେଖାରୁ କିଛି ଅଂଶ ଏଠାରେ ଉଦ୍ଧୃତ କରାଯାଉଛି । "ମୁଁ

ପ୍ରଥମେ ୧୯୬୩ ମସିହାରେ ଭାରତର ଏକମାତ୍ର କ୍ଷିପ୍ର ଗତିଶୀଳ ଏହି ସୁନ୍ଦର ହରିଣକୁ ବଲାଙ୍ଗିରର ଆଖପାଖ ଅଞ୍ଚଳରେ ଖୋଲା ପଡ଼ିଆରେ ବୁଲୁଥିବା ବସ୍‌ରେ ଯାଉଥିବା ବେଳେ ରାସ୍ତା କଡ଼ରେ ଦେଖିଥିଲି। ସେତେବେଳେ, ଅଳ୍ପ କିଛି ବର୍ଷ ତଳେ ବଲାଙ୍ଗିର ପାଟନା ରାଜ୍ୟ ଓଡ଼ିଶା ପ୍ରଦେଶ ସହ ଅନ୍ତର୍ଭୁକ୍ତ ଥିଲା। ପାଟନାର ରାଜାମାନେ ତାଙ୍କ ରାଜ୍ୟରେ ହରିଣ ଶିକାର ନିଷିଦ୍ଧ କରି ଦେଇଥିଲେ। ହରିଣମାନେ ସେଥିପାଇଁ ନିର୍ଭୟରେ ବୁଲୁଥିଲେ। କିନ୍ତୁ ଅଳ୍ପ କିଛି ବର୍ଷ ପରେ ସେହି କଟକଣା କୋହଳ ହୋଇ ଯିବାରୁ ଶିକାରୀମାନେ ଯଥେଚ୍ଛାଚାର ଭାବରେ ଏହାର ସୁସ୍ୱାଦୁ ମାଂସ ଲୋଭରେ ହରିଣ ଶୀକାର କରିବାକୁ ଆରମ୍ଭ କଲେ। ଫଳରେ ଦୁଇ ତିନି ବର୍ଷ ମଧ୍ୟରେ ସମଗ୍ର ଜିଲ୍ଲାରୁ ଏହି ହରିଣ ପ୍ରାୟ ଲୋପ ପାଇଗଲା।" ସହଜରେ ଉପଲବ୍ଧି କରିହେଉଛି ଯେ ଆମ ରାଜ୍ୟରେ ବିଭିନ୍ନ ସ୍ଥାନରୁ ଏହି ଦୁର୍ଲ୍ଲଭ ପ୍ରାଣୀ ଲୋପ ପାଇ ଯାଇଛନ୍ତି। ଆହୁରି ମଧ୍ୟ ଶୁଣିବାକୁ ମିଳେ ଯେ ଭିତର କନିକାର ସାତଭାୟା ପ୍ରଭୃତି ସମୁଦ୍ରକୂଳ ବିଲିଆ ସ୍ଥାନ ଓ କୁଜଙ୍ଗର ହୁକିଟୋଲାରେ ବାଲିହରିଣ ଦେଖିବାକୁ ମିଳୁଥିଲେ ମଧ୍ୟ ଆଜି କେବଳ ବାଲିପଦର ଓ ଭେଟନଇ ଗ୍ରାମ ନିକଟ ଅଞ୍ଚଳ ଓ ସମୁଦ୍ର ଉପକୂଳବର୍ତ୍ତୀ ଝାଉଁ ଜଙ୍ଗଲ ବିଶେଷତଃ କୋଣାର୍କଠାରୁ ପୁରୀ ପର୍ଯ୍ୟନ୍ତ ବିସ୍ତୃତ ବେଳାଭୂମିରେ ବର୍ତ୍ତମାନ ଏହି ଅଞ୍ଚଳ କୋଣାର୍କ-ବାଲୁଖଣ୍ଡ ଅଭୟାରଣ୍ୟ ଭାବେ ପରିଚିତ) ସେମାନଙ୍କୁ ବହୁ ସଂଖ୍ୟାରେ ଦେଖିବାକୁ ମିଳେ। ଗଣନାରୁ ଜଣା ପଡ଼ିଛି ଯେ, ଆମ ରାଜ୍ୟରେ ପ୍ରାୟ ୮୦୦ ବାଲିହରିଣ ଅଛନ୍ତି। ଏହା ମଧ୍ୟରୁ କେବଳ ବାଲିପଦର-ଭେଟନଇ ଅଞ୍ଚଳରେ ୫୦୦ରୁ ଊର୍ଦ୍ଧ୍ୱ ବାଲିହରିଣ ଅଛନ୍ତି। ଏହା ବ୍ୟତୀତ ନନ୍ଦନକାନନ ପ୍ରାଣୀ ଉଦ୍ୟାନ, ମୋତିଝରଣ (ସମ୍ବଲପୁର) ଓ କପିଳାସ (ଢେଙ୍କାନାଳ) ମୃଗ ବିହାର ପ୍ରଭୃତି ସ୍ଥାନରେ ଆବଦ୍ଧ ପରିବେଶରେ ପ୍ରାୟ ୧୦୦ ବାଲିହରିଣ ଅଛନ୍ତି। ଭାରତ ବ୍ୟତୀତ ଆମେରିକାର ଟେକ୍ସାସ୍‌ରେ ୧୯୮୮ ମସିହା ଗଣନା ଅନୁଯାଇ ୨୦,୦୦୦ରୁ ଊର୍ଦ୍ଧ୍ୱ ବାଲିହରିଣ ଥିଲେ। ଏମାନେ ଭାରତୀୟ ବଂଶୋଦ୍ଭବ ବୋଲି ଜଣାଯାଏ।

ବାଲିପଦର ଓ ତା'ର ପାଖାପାଖି ଗାଁଗୁଡ଼ିକ ଘେରି ରହିଥିବା ଛୋଟ'ବଡ଼ ପାହାଡ଼, ବୁଦୁବୁଦିଆ ଜଙ୍ଗଲ, ପର୍ଯ୍ୟାପ୍ତ ପରିମାଣରେ ଶୁଷ୍କ ଜମି, ପାଣିର ସୁବିଧା ତଥା ନିରାପଦ ଏହି ଅଞ୍ଚଳଟି ବାଲିହରିଣମାନଙ୍କର ରହିବା, ଖାଇବା ଓ ବଂଶ ବୃଦ୍ଧିରେ ସହାୟକ ହୋଇଥାଏ। ଏହି ହରିଣ ନିଘଞ୍ଚ ଜଙ୍ଗଲ କିମ୍ବା ସନ୍ତସନ୍ତିଆ ଲୁଣା ଜଙ୍ଗଲରେ ରହିବାକୁ ପସନ୍ଦ କରନ୍ତି ନାହିଁ। ଶୁଷ୍କ ଜମି ଓ ଠାଏ ଠାଏ ଥିବା ଘାସ ପଡ଼ିଆରେ ଏମାନେ ଚରାବୁଲା କରନ୍ତି। ଦୁବ, ମୁଥା ଓ ଲାନସିରି ଜାତୀୟ ଘାସ ଆଗ୍ରହରେ ଖାଆନ୍ତି। ଏହା ବ୍ୟତୀତ ମୁଗ, କାନ୍ଦୁଲ, ଚଣା ଓ କୋଳଥ ପ୍ରଭୃତି ଡାଲି ଜାତୀୟ ଖାଦ୍ୟ ଏବଂ କଅଁଳ ଧାନ ଓ ମାଣ୍ଡିଆ ମଧ୍ୟ ଖାଇଥାନ୍ତି। ବିଭିନ୍ନ ଗଛର କୋମଳ ପତ୍ର ଫୁଲ ଓ ଫଳ ସେମାନଙ୍କର ଖାଦ୍ୟ ଉପଯୋଗୀ ହୋଇଥାଏ।

ବାଲିହରିଣଗୁଡ଼ିକ ସଙ୍ଘବଦ୍ଧ ଜୀବନ ଯାପନ କରନ୍ତି। ସାଧାରଣତଃ ଅନେକଗୁଡ଼ିଏ ମାଈରେ ଗୋଟିଏ ଅଣ୍ଡିରା ଥିବା ଦଳ ଦେଖାଯାଇଥାଏ। ଏହା ବ୍ୟତୀତ ଅଣ୍ଡିରା ଓ ମାଈ ହରିଣ ଅଲଗା ଦଳ ମଧ୍ୟ ଗଠନ କରନ୍ତି। ଅଧିକାଂଶ ଦଳରେ ୩ରୁ ୯ ସଂଖ୍ୟକ ବାଲି-ହରିଣ ଦେଖା ଯାଆନ୍ତି। ପ୍ରତ୍ୟେକ ଦଳରେ ଶକ୍ତିଶାଳୀ ଅଣ୍ଡିରା ଟିଏ ଆଧିପତ୍ୟ ବିସ୍ତାର କରେ। ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ମଧ୍ୟରେ ସେ ଅନ୍ୟ ଅଣ୍ଡିରାର ପ୍ରବେଶକୁ ପ୍ରତିରୋଧ କରେ। ଯଦି ଅନ୍ୟ ଅଣ୍ଡିରା ହରିଣ ଏହାର ସୀମାରେଖା ଭିତରକୁ ଆସେ ତାହେଲେ ଉଭୟଙ୍କ ମଧ୍ୟରେ ଲଢ଼େଇ ହୁଏ ଓ ଯେଉଁ ହରିଣ ଜିତେ ସେ ସେହି ଇଲାକା ଦଖଲ କରେ। କ୍ରୋଧାନ୍ୱିତ ହୋଇ ମାଙ୍କଡ଼ ପରି କର୍କଶ ଶବ୍ଦ କରେ। ବର୍ଷକ ପରେ ଶିଙ୍ଗ ବଢ଼ିବା ସଙ୍ଗେ ସଙ୍ଗେ ଅଣ୍ଡିରାଗୁଡ଼ିକ ଦଳ ମଧ୍ୟକୁ ପ୍ରବେଶ କରିବାର ପ୍ରୟାସ ଆରମ୍ଭ କରନ୍ତି। ପ୍ରଥମାବସ୍ଥାରେ ଏମାନଙ୍କର ଶିଙ୍ଗ ବର୍ଷକୁ ୬ରୁ ୨୦ ସେ: ମି: ବୃଦ୍ଧି ପାଏ। ପାଞ୍ଚ ଛଅ ବର୍ଷ ବେଳକୁ ବୃଦ୍ଧିର ହାର କମିଯାଏ। ଅତି ବେଶିରେ ୭୫ରୁ ୮୦ ସେ: ମି: ବୃଦ୍ଧି ପାଇଥିବା ବେଳେ ପ୍ରତ୍ୟେକ ଶିଙ୍ଗରେ ୩୨ରୁ ୩୫ଟି କୁଣ୍ଡଳି ହୋଇଥାଏ। ଅଣ୍ଡିରାଗୁଡ଼ିକ ଆକୃତିରେ ବଡ଼ ଓ ହାରାହାରି ଉଚ୍ଚତା ୭୫ରୁ ୮୦ ସେ: ମି:। ମାଈଗୁଡ଼ିକର ହାରାହାରି କାନ୍ଧର ଉଚ୍ଚତା ୭୫ରୁ ୭୭ ସେ: ମି:। ଏମାନଙ୍କ ହାରାହାରି ଓଜନ ପ୍ରାୟ ୪୦ କି: ଗ୍ରା:।

ସକାଳୁ ସଂଧ୍ୟା ଯାଏ ଖାଇବା, ଖେଳିବା, ବୁଲିବା, ଦୌଡ଼ିବା ଓ ଶୋଇବା ବାଲିହରିଣମାନଙ୍କର ଦୈନିକ କାର୍ଯ୍ୟ। ସୂର୍ଯ୍ୟୋଦୟ ପରଠାରୁ ପୂର୍ବାହ୍ନ ୯-୦୦ରୁ ୯-୩୦ ଯାଏ ଓ ଅପରାହ୍ନ ୩-୦୦ରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଏମାନେ ଅଧିକ ସମୟ ଚରିବାରେ କଟାନ୍ତି। ଖରା ଅଧିକ ହେଲେ ବିଶ୍ରାମ କରନ୍ତି। ଟାଁ ଛଡ଼ା ଭୟ ପାଇ ଦୌଡ଼ିବା ସେମାନଙ୍କଠାରେ ଅଧିକାଂଶ ବେଳେ ଦେଖା ଯାଏ। ଏମାନେ ଘଣ୍ଟାକୁ ପ୍ରାୟ ୫୦ରୁ ୬୦ ମାଇଲ ବେଗରେ ଦୌଡ଼ି ପାରନ୍ତି। ଦୌଡ଼ିବା ବେଳେ ଭୂଇଁକୁ କୁଦା ମାରି ଡେଇଁ ଡେଇଁ ଯାଆନ୍ତି। ପ୍ରତ୍ୟେକ କୁଦାରେ ପ୍ରାୟ ୧ରୁ ୨ ମି:ରେ ଏବଂ ୨ରୁ ୩ ମି: ଦୂରତା ଅତିକ୍ରମ କରନ୍ତି। ବାଲିହରିଣର ଦୃଷ୍ଟିଶକ୍ତି ଓ ଆଘ୍ରାଣ ଶକ୍ତି ଅପେକ୍ଷା ଶ୍ରବଣ ଶକ୍ତି ତୀକ୍ଷ୍ଣ। ବିପଦର ସଂକେତ ମିଳିଲେ ଦଳର ସବୁ ହରିଣ ଏକାବେଳେକେ ଧୀରେ ଧୀରେ ଦୌଡ଼ି ଗଲେ ଖୁବ୍ ଉଚ୍ଚକୁ କୁଦା ମାରି ପଳାଇ ଯାନ୍ତି। ଏତିକିବେଳେ ମାଈ ହରିଣ ଦଳର ନେତୃତ୍ୱ ନେଇଥାଏ।

ଦୁଇ ବର୍ଷବେଳକୁ ମାଈଗୁଡ଼ିକ ଛୁଆ ଜନ୍ମ କରିବାରେ ସକ୍ଷମ ହୋଇ ଯାନ୍ତି। ବର୍ଷକୁ ଦୁଇ ଥର ଓ ଥରକୁ ଗୋଟିଏ ଲେଖାଏଁ ଛୁଆ ଦିଅନ୍ତି। ଗର୍ଭ ଧାରଣ ସମୟ ପ୍ରାୟ ୧୭୫ରୁ ୧୯୦ ଦିନ। ଛୁଆଗୁଡ଼ିକ ମାସକରୁ ଦେଢ଼ମାସ ଯାଏ ମା'କ୍ଷୀର ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି। ଏହି ସମୟରେ ଅଧିକ ବିଶ୍ରାମ ନେଉଛନ୍ତି। ଏମାନଙ୍କ ଜୀବନ କାଳ ପ୍ରାୟ ୧୨ରୁ ୧୫ ବର୍ଷ।

ଏହି ଅଞ୍ଚଳର ବାଲିହରିଣମାନଙ୍କ ପ୍ରତି ଆଦର ଓ ସ୍ନେହ ଏମାନଙ୍କର ବଂଶରକ୍ଷା ଓ ବଂଶ ବୃଦ୍ଧିରେ ସହାୟକ ହୋଇ

ପାରିଛି । କିନ୍ତୁ ଅଳ୍ପ କେତେ ବାଲିହରିଣ ବିଶେଷତଃ ଛୁଆଗୁଡ଼ିକ ମରୁ ଥିବାର କେତେକ ଦୃଷ୍ଟାନ୍ତ ମିଳେ । ଜନ୍ମ ହେବାର ଖୁବ୍ ଅଳ୍ପ ଦିନରେ ବାଲିହରିଣ ଛୁଆମାନଙ୍କୁ ଧରି ପୋଷା ମନାଇବାର ଆଗ୍ରହ ଏମାନଙ୍କର ମୃତ୍ୟୁର କାରଣ ହୋଇଥାଏ । ବିଶେଷତଃ ପ୍ରକୃତ ଖାଦ୍ୟ ଓ ଯତ୍ନର ଅଭାବ ତଥା ମା'ର ଆଦରରୁ ବଞ୍ଚିତ ହୋଇ ଅଳ୍ପ କେତେଦିନ ପରେ ଛୁଆଗୁଡ଼ିକ ମରି ଯାଆନ୍ତି । ଏହା ବ୍ୟତୀତ ବିଭିନ୍ନ ପ୍ରକାର ରୋଗ ଓ ନିଜ ନିଜ ଭିତରେ ଲଢ଼େଇ (ବିଶେଷତଃ ଅଣ୍ଡିରା ହରିଣ, ଦ୍ୱାରା କିଛି ହରିଣ ମରି ଥିବାର ପ୍ରମାଣ ମିଳେ) ।

ଏହି ପ୍ରାଣୀମାନଙ୍କର ସୁରକ୍ଷା, ବଂଶ ରକ୍ଷା, ବଂଶ ବୃଦ୍ଧି ଓ ଜୀବନ ପ୍ରଣାଳୀ ତଥା ଏମାନଙ୍କ ପରିବେଶ ଉପରେ ବିଶଦ ଗବେଷଣା ପାଇଁ ଭାରତ ସରକାରଙ୍କର ପରିବେଶ ଓ ବନ ବିଭାଗ ସହାୟତାରେ ଓଡ଼ିଶା ସରକାରଙ୍କ ବନ୍ୟପ୍ରାଣୀ ସଂସ୍ଥା ଏକ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହି ସଂସ୍ଥାର ଗବେଷକମାନେ ୧୯୯୬ ମସିହାରୁ ବାଲିହରିଣମାନଙ୍କ ଉପରେ ଗବେଷଣା କରି ବିଭିନ୍ନ ତଥ୍ୟ ସଂଗ୍ରହ କରୁଛନ୍ତି । ଏହି ଦୁର୍ଲ୍ଲଭ ପ୍ରାଣୀମାନେ ଏହି ଲୋକମାନଙ୍କ ସହଯୋଗ ଓ ସହାନୁଭୂତିରେ କିପରି ଭଲରେ ରହି ପାରିବେ ଓ ବଂଶ ବୃଦ୍ଧି କରିପାରିବେ ଏ ସମ୍ପର୍କରେ ବୈଜ୍ଞାନିକ ତଥ୍ୟ ସମ୍ବଳିତ ଏକ ପରିଚାଳନା ଯୋଜନା ଭବିଷ୍ୟତରେ କାର୍ଯ୍ୟକାରୀ କରାଯିବାର ପ୍ରସ୍ତାବ ଅଛି ।

---

ମୁଖ୍ୟ ବନ୍ୟପ୍ରାଣୀ ତତ୍ତ୍ୱାବଧାରକ କାର୍ଯ୍ୟାଳୟ,
ଶହୀଦନଗର, ଭୁବନେଶ୍ୱର-୭୫୧୦୦୭

# ଦଶହରା

ଶ୍ରୀ ହରିରାମ ସିଂହ

ଦଶହରା ଆସେ ପସରା ମେଲେଇ
ପଲ୍ଲୀରାଣୀ ଆଜି ନାଚେ ଥେଇ ଥେଇ
ଘରେ ଘରେ ପିଠାପଣା ବାକରା
ଆସିଅଛି ପରା ଆଜି ଦଶହରା ।

ମା' ଦଶଭୁଜା ହୋଇଲେ ଉଭା
ଘରେ ଘରେ ଆଜି ତାଙ୍କର ପୂଜା
ଶଙ୍ଖ ହୁଳହୁଳି ପଡ଼ଇ ଭଳ୍ଳି
ଘଣ୍ଟ ଶୋଳନାଦେ କମ୍ପଇ ଧରା ।
ବରଷକେ ଥରେ ଦୁର୍ଗତିନାଶିନୀ
ସରଗୁ ଓହ୍ଲାଇ ଆସନ୍ତି ଅବନୀ
ହାତେ ଖଡ଼୍‌ଗ ଧରି ଦଇତକୁ ମାରି
ତାରଣ କରିବେ ଭକତେ ପରା ।

ସିଂହ ବାହିନୀ ମା' ହିମାଦ୍ରି ହେମା
ଜଗତମା ଗଉରୀ ଅମ୍ବିକା ଉମା
କର ବାରେ ଦୟା ଓଡ଼ିଆ ଜାତିକୁ
ଘୁଞ୍ଚିଯାଉ ସବୁ ଦୁଃଖ ପସରା ।

---

ଲାଲବାଗ ଥାନା ପରିସର,
[illegible], କଟକ-୨

# ସେ କିଆଁ ଗୁହିଁବ ସୃଷ୍ଟିର ବଳି କହ.....

ଶ୍ରୀ ଦେଶବନ୍ଧୁ ମିଶ୍ର

ଯୁଗେ....ଯୁଗେ ଯିଏ ସାରା ଜଗତର ମାଆ
ଜୀବ ହତ୍ୟାରେ ବ୍ୟଥିତା, ସେ ନୁହେଁ ତୁଚ୍ଛ
ଜଗତର ପ୍ରତି ରନ୍ଧ୍ର ଭିଜେ ତା ଲୁହେ
ସ୍ତନ ଯୁଗ ତା'ର ସନ୍ତାନ ପାଇଁ ପୁଚ୍ଛ ।

ସବୁ ନିଶ୍ୱାସ ସବୁ ରକ୍ତର ଧାରା
ସବୁ ଚେତନାର ସେ ମହା ଜାହ୍ନବୀ ଉତ୍ସ
ତା'ର ମମତାର ବଳୟେ ସକଳ ଧରା
ମହାନତା ତା'ର ଆଲୋକ ସମାନ ସ୍ୱଚ୍ଛ ।
ଭୟ ସେ ଦିଏନା, ଅଭୟ କରଇ ଦାନ
ରକ୍ତ ମାଗେନା, ରକ୍ତ ନିଗାଢ଼େ ବକ୍ଷୁ
ପଶୁ ବଳି ତାକୁ କେତେ ବଡ଼ ଅପମାନ
କେତେ ଯନ୍ତ୍ରଣା ବିଦ୍ଧ କରେ ତା ଚକ୍ଷୁ ।

ଲାଳନ ସମାନ ତାଡ଼ନେ ବି ସିଏ ଦକ୍ଷା
ଦୁଷ୍କୃତି ନାଶେ....ଦୁର୍ଗତି ନାଶେ ଅଗ୍ରା
କରିବାକୁ ତା'ର ମୂକ ଜଗତକୁ ରକ୍ଷା
ଶକ୍ତି ରୂପିଣୀ ପାଲଟିବ ଦିନେ ଉଗ୍ରା ।
ସେ କିଆଁ ଗୁହିଁବ ସୃଷ୍ଟିର ବଳି କହ
ଯୁଗେ ଯୁଗେ ଯିଏ ସୃଷ୍ଟିର ହିତେ ବଳି
କେତେ ମମତାରେ ଝଳିଉଠେ ତା'ର ମୁହଁ
ପଶୁ ବଳି ଏକ ଅନ୍ଧକାରର ଗଳି

---

ଦରଡା ପଣ୍ଡା ସାହି,
ପୁରୀ

# ନୂଆପଡ଼ା ଜିଲ୍ଲାର ସଫଳ କାହାଣୀ

**ଶ୍ରୀ ଅଶୋକ କୁମାର ପାଢ଼ୀ**

ନୂଆପଡ଼ା ଜିଲ୍ଲାର ତରବୋଡ଼ଠାରୁ ମାତ୍ର ଏକ କିଲୋମିଟର ଦୂରରେ ମୁଖ୍ୟ ସଡ଼କର ପାର୍ଶ୍ୱରେ ଏକ ଶହ ବତିଶି ଏକର ଜମିର ସବୁଜିମା ହେଉଛି "ସମ୍ଭବ" ପ୍ରକଳ୍ପର ପରିପ୍ରକାଶ ।



୧୯୯୩-୯୪ ମସିହାରେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ନୂଆପଡ଼ା ଦ୍ୱାରା ୨୫.୦୦ ଲକ୍ଷ ଟଙ୍କା ଅଟକଳରେ ଦୁଇଟି ପାତାଳ ଭେଦି ପାଣିପମ୍ପ ସାହାଯ୍ୟରେ ବୁନ୍ଦା ଜଳସେଚନ ପ୍ରକ୍ରିୟା ଦ୍ୱାରା ୨୦୦ ଜଣ ଅନୁସୂଚିତ ଜାତିର ହିତାଧିକାରୀଙ୍କ ଉନ୍ନତି ପାଇଁ କଲମୀ ଆମ୍ବ, ପିଜୁଳି, ବରକୋଳି, ଲେମ୍ବୁ ଇତ୍ୟାଦି ଲଗାଯାଇ ଫଳ ବଗିଚା ସୃଷ୍ଟି କରାଯିବା ସହିତ ସଙ୍କର ଜାତୀୟ ପନିପରିବା ଚାଷ କରାଯାଇଥିଲା । ଶୁଷ୍କାଞ୍ଚଳ ଚାଷ ପଦ୍ଧତି ମଧ୍ୟ ଅନୁସରଣ କରାଯାଇଥିଲା । ଏତଦ୍‌ଭିନ୍ନ ସାମାଜିକ ବନ ପ୍ରକଳ୍ପ ଯୋଜନାରେ କୋଡ଼ିଏହଜାର ସାଗୁଆନ୍ ଗଛ ଲଗାଯାଇଛି ଓ ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ଏଠାରେ ଘାସରୋପଣ ମଧ୍ୟ କରାଯାଇଛି ।

"ସମ୍ଭବ" ପ୍ରକଳ୍ପ ପୂର୍ଣ୍ଣ ସମ୍ଭବ ହେଲାବେଳକୁ ହଠାତ୍ ୧୯୯୬ ମସିହାରେ ରୌଦ୍ର ତାପରେ ୩ ଥର ପୋଡ଼ିଯାଇ ଧ୍ୱଂସ ହୋଇଗଲା । ଫଳ ବଗିଚା ସହିତ ବୁନ୍ଦା ଜଳସେଚନ ସମ୍ପୂର୍ଣ୍ଣ ରୂପେ ନଷ୍ଟ ହୋଇଗଲା । ଜଣାଯାଉଥିଲା ଯେ, ୨୦୦ ହିତାଧିକାରୀଙ୍କ ଆଶା ଓ ଭରସାର "ସମ୍ଭବ" ଧୀରେ ଧୀରେ ଅସମ୍ଭବ ଆଡ଼କୁ ଗତି କରୁଛି । କିନ୍ତୁ ଶ୍ରୀ ସତ୍ୟବ୍ରତ ସାହୁ ଆଇ.ଏ.ଏସ୍. ଜିଲ୍ଲାପାଳ, ନୂଆପଡ଼ା ହିସାବରେ ଦାୟିତ୍ୱ ନେଲାପରେ "ସମ୍ଭବ" ପ୍ରକଳ୍ପର ଭାଗ୍ୟ ରବି ଉଦୟ ହେଲା । ତାଙ୍କର ଆପ୍ରାଣ ଉଦ୍ୟମ ବଳରେ "ସମ୍ଭବ" ପ୍ରକଳ୍ପ ଆଜି ସମ୍ଭବ ହୋଇପାରିଛି ।

ଉକ୍ତ ପ୍ରକଳ୍ପରେ ଦୁଇଶହ ଜଣ ହିତାଧିକାରୀଙ୍କ ମଧ୍ୟରୁ ଉତ୍ସାହୀ ଏକଶହ ଜଣଙ୍କୁ ଏକ ଏକର ଲେଖାଏଁ ଜମି ଚିହ୍ନାଇ ଦିଆଯାଇ ୧୯୯୭-୯୮ ଖରିଫରେ ଏକଶହ ହିତାଧିକାରୀଙ୍କୁ ଡି.ଆର୍.ଡି.ଏ., ନୂଆପଡ଼ା ତରଫରୁ ସମସ୍ତ ସାହାଯ୍ୟ ଯୋଗାଇ ଦିଆଯାଇଥିଲା ଓ ହିତାଧିକାରୀମାନେ ଉପକୃତ ହେଲେ । ଚାଷ ପ୍ରତି ସେମାନଙ୍କର ଆଗ୍ରହ ବଢ଼ିଲା । ସେହିବର୍ଷ ରବିଋତୁରେ ପ୍ରକୃତ ଅଭ୍ୟୁଦୟ ହେଲା । ଦୁଇଟି ପାତାଳ ଭେଦି ପମ୍ପର ମରାମତି କରାଯାଇ ଦୁଇଟି ସିଞ୍ଚନ ଜଳସେଚନ ଯନ୍ତ୍ର ଯୋଗାଇଦେବା ସହିତ ଶସ୍ୟ ସଂରକ୍ଷଣ ଲାଗି ଦୁଇଟି ହସ୍ତଚାଳିତ ସ୍ପ୍ରେୟର ଯୋଗାଇ ଦିଆଗଲା । ୭୫ ଜଣ ହିତାଧିକାରୀ ଚିନାବାଦାମ ଓ ସଙ୍କର ସୂର୍ଯ୍ୟମୁଖୀକୁ ମିଶ୍ରିତ ଚାଷ ହିସାବରେ ନେଇ ଏକର ପ୍ରତି ଚିନାବାଦାମ ୭-୮ କ୍ୱିଣ୍ଟାଲ ଓ ସୂର୍ଯ୍ୟମୁଖୀ ୨-୩ କ୍ୱିଣ୍ଟାଲ ଅମଳ କଲେ । ଏଥି ସହିତ ସଙ୍କର ଜାତୀୟ ପନିପରିବା ଯଥା-ବାଇଗଣ, ବିଲାତି, ଲଙ୍କା, ବନ୍ଧାକୋବି, ତରଭୁଜ ଇତ୍ୟାଦି ଚାଷ କରି ପ୍ରତ୍ୟେକ ଛଅ ହଜାରରୁ ଦଶ ହଜାର ଭିତରେ



ପାଇଲେ । ଯେଉଁ ଲୋକମାନେ କାର୍ଯ୍ୟ ଅନ୍ୱେଷଣରେ ବାହାରକୁ ଯାଉଥିଲେ ସେମାନେ ବାହାରକୁ ନଯାଇ ନିଜ ନିଜର ଜମିରେ ବିଭିନ୍ନ • ପ୍ରକାର ଚାଷକରି ଲାଭବାନ୍ ହୋଇପାରିଲେ ।

ଶ୍ରୀ ବୈଦ୍ୟଧର ତାଣ୍ଡି, ଗ୍ରାମ-ତରବୋଡ଼ ଜଣେ ଭୂମିହୀନ । ସେ 'ସମ୍ଭବ' ପ୍ରକଳ୍ପରେ ସିଏ ଏକ ଏକର ଜମିରେ ଚାଷ କରେ । ସେ

ପ୍ରତିବର୍ଷ ରାୟପୁର ଯାଇ ରିକ୍ସା ଚଳାଉଥିଲା । ସ୍ୱାମୀ, ସ୍ତ୍ରୀ, ଗୋଟିଏ ପୁଅ ୧୫ ବର୍ଷର ଓ ଦିନିଝିଅକୁ ନେଇ ତା'ର ପରିବାର । ବହୁତ ଦୁଃଖରେ ରହୁଥିଲା । ଗତବର୍ଷ ସେ ତା'ର ଜମିରେ



ଚିନାବାଦାମ, ସୂର୍ଯ୍ୟମୁଖୀ ଓ ସଙ୍କର ଜାତୀୟ ପନିପରିବା କରି ପ୍ରାୟ ୧୮,୦୦୦.୦୦ ଟଙ୍କା ପାଇଲା । ସେଥିରେ ସେ ନିଜ ଘର ମରାମତି କଲା । ହଳେ ବଳଦ କିଣିଲା । ସାଇକଲ୍‌ଟିଏ କିଣିଲା ଓ ତା'ର ଦୁଇ ଝିଅ ମହନା ଓ ଚନ୍ଦ୍ରକାନ୍ତିକୁ ସ୍କୁଲରେ ପଢ଼ାଉଛି । ଚଳିତ ବର୍ଷ ଖରିଫରେ ସେ ଚିନାବାଦାମ ସହିତ ମକାଚାଷ କରିଛି । ପ୍ରତିଦିନ ସେ ପନିପରିବାରୁ ଦୁଇ ପଇସା ରୋଜଗାର କରୁଛି ଓ ରାୟପୁର ଯାଇ ରିକ୍ସା ଟାଣିବାକୁ କହିବାରୁ ସେ ଆଜିକାଲି ଡୁହାର କରିବା ଦେଖାଯାଏ ।

ଶ୍ରୀ ଶିବଦାସ ମୋହରା, ଗ୍ରାମ–ଦରବୋଡ଼, ସ୍ୱାମୀ, ସ୍ତ୍ରୀ ଓ ତା'ର ଦୁଇଟି ପୁଅ ସ୍କୁଲରେ ପଢ଼ନ୍ତି । ଗୁଜୁରାଣ ମେଣ୍ଟାଇବାକୁ ବହୁତ ଅସୁବିଧା ହେଉଥିଲା । ଗତ ରବି ଋତୁରେ ସେ ସଙ୍କର ଜାତୀୟ ପନିପରିବା କରି ପ୍ରାୟ ୧୮,୦୦୦.୦୦ ଟଙ୍କା ଓ ଚିନାବାଦାମ ଓ ସୂର୍ଯ୍ୟମୁଖୀରୁ ୫,୦୦୦ ଟଙ୍କା ପାଇଥିଲା । ଚଳିତ ଖରିଫରେ ପନିପରିବା ଚାଷ କରିବା ସହିତ ଚିନାବାଦାମ ଓ ମୁଗ ଚାଷ କରିଛି । ପିଲାଦୁଇଟିକୁ ସ୍କୁଲକୁ ପଠାଉଛି । ସ୍ୱାମୀ, ସ୍ତ୍ରୀ ଦୁଇଜଣ ନିଜର କ୍ଷେତରେ ଆନନ୍ଦରେ କାମ କରନ୍ତି । ହଳେ ବଳଦ କିଣିଛି । କିଛି ସଞ୍ଚୟ କରିଛି । ପ୍ରଥମେ ସେ ଦିନ ମଜୁରିଆ କାମ କରୁଥିଲା । କିନ୍ତୁ ଏବେ ସେ ନିଜେ ମାଲିକ । ଏହିପରି ପ୍ରାୟ ସମସ୍ତ ହିତାଧିକାରୀ ଉପକୃତ ହେଉଛନ୍ତି ।



ଏହି ସଫଳତା ପଛରେ ଶ୍ରୀ ପ୍ରଫୁଲ୍ଲ କୁମାର ପ୍ରଧାନ, ସହ ପ୍ରକଳ୍ପ ଅଧିକାରୀ (କୃଷି), ଡି:ଆର୍:ଡି:ଏ:, ନୂଆପଡ଼ା, ଶ୍ରୀ ହିମାଂଶୁ କୁମାର ମହାପାତ୍ର, କନିଷ୍ଠ କୃଷି ଅଧିକାରୀ, ସି:ବି:ଡି:ଏ: ସୁନାବେଡ଼ା, ଶ୍ରୀ ଭିକାରୀ ଦାସ, କୃଷି ଓଭରସିଅର, ଦରବୋଡ଼ଙ୍କ ବହୁତ ଅବଦାନ ରହିଛି ।

---

ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ,
ନୂଆପଡ଼ା

# ଜାତିର ଗୁରୁ ଡଃ ରାଧାକୃଷ୍ଣନ୍

**ଶ୍ରୀ ସଚ୍ଚିଦାନନ୍ଦ ବେହେରା**

"ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁ
ଗୁରୁର୍ଦେବ ମହେଶ୍ୱର ।
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମ
ତସ୍ମୈଶ୍ରୀ ଗୁରବେ ନମଃ ॥

ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ଥିଲେ ଜାତିର ଗୁରୁ ଏବଂ ଦ୍ରଷ୍ଟା ଓ ସ୍ରଷ୍ଟା । ଅଗାଧ ଜ୍ଞାନ, ଦର୍ଶନ ଶାସ୍ତ୍ରରେ ବ୍ୟୁତ୍ପତ୍ତି, ଛାତ୍ର ବତ୍ସଳତା ଓ ନିରହଙ୍କାର ସ୍ୱଭାବ ତାଙ୍କୁ ନିଜ ଦେଶର ଚତୁଃସୀମା ମଧ୍ୟରେ କରିନଥିଲା । ସାରା ବିଶ୍ୱରେ ତାଙ୍କର ବିଲକ୍ଷଣ ବ୍ୟକ୍ତିତ୍ୱ ଓ ଅସାମାନ୍ୟ ପ୍ରତିଭା ପ୍ରତିଭାତ ହୋଇଥିଲା । "The Reign of Religion in contempory philosophy" ଏବଂ ((The philosophy of Rabindranath" "Indian philosophy" ଆଦି ଧର୍ମ, ଦର୍ଶନ, ଇତିହାସ, ସଂସ୍କୃତି, ବେଦ ଓ ଉପନିଷଦ ଉପରେ ବହୁ ପୁସ୍ତକ ରଚନା କରି ଆନ୍ତର୍ଜାତିକ ସ୍ତରରେ ଜଣେ ବିଶିଷ୍ଟ ଦାର୍ଶନିକ ଭାବେ ସେ ଖ୍ୟାତି ଲାଭ କରିଥିଲେ । ସେ ସାରା ଜୀବନ କଟାଇ ଦେଇଥିଲେ ସତ୍ୟ ଓ ସାଧୁତାର ଅନୁସନ୍ଧାନରେ ।

"ସର୍ବେ ଭବନ୍ତୁ ସୁଖିନଃ ,
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ,
ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।"

ସମସ୍ତ ଜୀବଜଗତ ସୁଖୀ ଓ ଆଧିବ୍ୟାଧି ମୁକ୍ତ ନିରୋଗ ହୁଅନ୍ତୁ । ସମସ୍ତେ ଭଲ ଦେଖନ୍ତୁ କେହି କେବେ ଦୁଃଖ ଭୋଗ ନ କରନ୍ତୁ । ଏହି ଉପନିଷଦୀୟ ବାକ୍ୟର ମହାନ ପ୍ରବକ୍ତା ଥିଲେ ରାଧାକୃଷ୍ଣନ୍ । ସମଗ୍ର ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ "ଋଗ୍‌ବେଦ"ର ସେହି "ମଧୁବାତା ଋତାୟତେ ମଧୁକ୍ଷରନ୍ତି ସିନ୍ଧବଃ । ଓଁ ଶାନ୍ତି-ଶାନ୍ତି-ଓଁ" ମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ସୃଷ୍ଟିକୁ ମଧୁମୟ କରିବା, ବିଶ୍ୱ ଭ୍ରାତୃତ୍ୱ ପ୍ରତିଷ୍ଠା କରିବା ଥିଲା ତାଙ୍କର ଏକମାତ୍ର ଆକାଂକ୍ଷା ।

ଭାରତୀୟ ଚିନ୍ତାଧାରା କେବଳ ଭାରତର ପୁନରୁତ୍‌ଥାନ ଦିଗରେ ଯେ ସହାୟକ ହେବ ତାହା ନୁହେଁ, ଏହା ସମଗ୍ର ମାନବ ସମାଜକୁ ଉଚିତ ମାର୍ଗରେ ପରିଚାଳିତ କରିବ । ସହନଶୀଳତା ଓ ସମନ୍ୱୟ ଭାରତୀୟ ସଂସ୍କୃତିର ଭିତ୍ତିଭୂମି । ଏହାହିଁ ଦାର୍ଶନିକ ରାଧାକୃଷ୍ଣନ୍ ପାଶ୍ଚାତ୍ୟ ଦେଶଗୁଡ଼ିକରେ ପ୍ରଚାର କରିଥିଲେ । ଏହାର ଉପାଦେୟତା ପ୍ରମାଣ କରିବାକୁ ଯାଇ ସେ କହୁଥିଲେ, ଭାରତୀୟ ସଂସ୍କୃତି କୌଣସି ସମ୍ପ୍ରଦାୟ ଦ୍ୱାରା ପ୍ରଭାବିତ ହୋଇ ନାହିଁ ବରଂ ଏହା ବହୁ ସମ୍ପ୍ରଦାୟକୁ ପ୍ରଭାବିତ କରିଅଛି ।

ପ୍ରଚଣ୍ଡ ପ୍ରତିଭାଧାରୀ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ଥିଲେ ବିଶ୍ୱର ପ୍ରଜ୍ଞା, ପ୍ରତିଭାର ମୂର୍ତ୍ତିମନ୍ତ ପ୍ରତୀକ, ବିଦ୍‌ବତ୍ତାର ସମୁଦ୍ର, ଅନୁଭୂତିର ନିର୍ଝର ।

---

ସହ ସୂଚନା ଅଧିକାରୀ,
ଲୋକ ସମ୍ପର୍କ ଭବନ,
ଭୁବନେଶ୍ୱର

## ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ ପାଇଁ ଏକ କୋଟି ଦଶ ଲକ୍ଷ ଟଙ୍କାର ସବ୍‌ସିଡି ମଞ୍ଜୁର

ରାଜ୍ୟ ସରକାର ଛାତ୍ରଛାତ୍ରୀ, ସ୍ୱାଧୀନତା ସଂଗ୍ରାମୀ, ଦୃଷ୍ଟିହୀନ ତଥା ଶାରୀରିକ ଅକ୍ଷମମାନଙ୍କୁ ଭ୍ରମଣ ରିହାତି ପ୍ରଦାନ କରୁଥିବାରୁ ରାଜ୍ୟ ସଡ଼କ ପରିବହନ ନିଗମରେ ଉପୁଜିଥିବା କ୍ଷତି ଭରଣା କରିବା ନିମନ୍ତେ ଏକ କୋଟି ଦଶ ଲକ୍ଷ ଟଙ୍କା ସମ୍ପୃକ୍ତ ନିଗମକୁ ମଞ୍ଜୁର କରିଅଛନ୍ତି । ଏହି ଅର୍ଥ ରାଜ୍ୟ ସଡ଼କ ପରିବହନ ନିଗମର ଅବସରପ୍ରାପ୍ତ କର୍ମଚାରୀମାନଙ୍କୁ ୧୯୯୭ ମସିହା ଜାନୁଆରୀ ମାସଠାରୁ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ୯ ମାସର ବକେୟା ପେନ୍‌ସନ୍ ଓ ଗ୍ରାଚ୍ୟୁଟି ବାବଦରେ ପ୍ରଦାନ କରାଯିବ । ଏହି ମଞ୍ଜୁରୀ ଆଦେଶ ସମ୍ପର୍କରେ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମର ଅଧ୍ୟକ୍ଷ ତଥା ପରିଚାଳନା ନିର୍ଦ୍ଦେଶକଙ୍କୁ ଜଣାଇ ଦିଆଯାଇଛି ।

# ଆବାହନୀ

ଶ୍ରୀମତୀ ଲକ୍ଷ୍ମୀ ମିଶ୍ର

ଶାରଦର ଶୀତଳ ଜୋଛନା ଯେବେ,
ବିଛୁରି ପଡ଼ଇ ଏଇ ଧରଣୀ ବକ୍ଷରେ,
ଆସ ତୁମେ ଅବତରି ଏଇ ଧରା ଧାମେ,
ଆଦ୍ୟାଶକ୍ତି ମହାମାୟୀ ଶକ୍ତି ସ୍ୱରୂପିଣୀ,
କରୁଅଛୁ ଆବାହନ ଏ ଧରଣୀବାସୀ,
ଦେଇ ତୁମ ଅଭୟ ପରଶ,
ଭରିଦିଅ ଏ ମାଟିରେ ଧନଧାନ୍ୟ ବିପୁଳ ସମ୍ପଦ ।
ସମସ୍ତ ଦେବ ଶକ୍ତି କରି ତୁମେ ଠୁଳ,
ବହ୍ନି ଶିଖା ମଧ୍ୟୁ ଯେବେ ହେଲ ଆବିର୍ଭୂତା,
ଦଶ ହସ୍ତେ ଧରି ତୁମେ ଦଶ ପ୍ରହରଣ,
ପଶୁରାଜ ବାହନରେ ହେଲ ବିରାଜିତା,
ମଣିଷ ମନରେ ଥିବା ଦାନବରୂପୀ ମହିଷା,
କରିବାକୁ ସମୂଳେ ନିଧନ ।
ମା'ଗୋ କରୁଣାମୟୀ ତୁମରୀ ଚରଣେ,
କରୁଅଛୁଁ ଏଇ ଭିକ୍ଷା ନତ କରି ଶିର ।
ଦୂର ହେଉ ଏ ଧରାରୁ ଦୁଃଖ ଓ ଯାତନା,
କର ତୁମେ ବିନାଶନ ଯେତେ ପାପ ତାପ ।
ଅଜ୍ଞାନ ତିମିର ନାଶି, ଜ୍ଞାନ ପରକାଶି,
ମଥା ପରେ ଦିଅ ମା' ଆଶିଷ ବରଷି ।

ନ ରହନ୍ତୁ ଭୋକି, ଶୋଷି, ପୀଡ଼ିତ, ପତିତ,
ସ୍ନେହ ପ୍ରେମ କରୁଣାରେ ଭରି ଉଠୁ ସବୁରି ହୃଦୟ ।
ଏତିକି ମାତ୍ର କରୁଣା କରିବ ଜନନୀ,
ବରଷକୁ ବରଷ କରି ଆଗମନ,
ଉଚ୍ଛ୍ୱାସ କରିବ ତୁମେ ଅବନୀର ଆଶା ।।
ତେବେ ସିନା ବୋଲାଉବ ଜଗତ ଜନନୀ,
ଯୁଗେ ଯୁଗେ ପାଉଥିବ ଧରା ପୃଷ୍ଠେ ପୂଜା ।
କିନ୍ତୁ ଆଉ ଏକ ଅଳି ତୁମ ପଦ ତଳେ,
ନ ପୂଜିବେ ଦେଇ ଜନେ ବଳି ଭୋଜା ।
ମା' ହୋଇ କେବେ ନ ଲୁହିବ ତୁମେ ସନ୍ତାନର ରକ୍ତ,
ଧର୍ମ ନାମେ ହୁଉ ଏହି ଜୀବ ବଳି ପ୍ରଥା,
ହେଉ ଏହା ସମୂଳେ ବିଲୋପ ଧରାବକ୍ଷୁ ଚିରଦିନ ଲାଗି ।
ଏତିକି ମାତ୍ରକ ଦୟା ରଖିଥିବ ଅଧମ ସନ୍ତାନେ,
ରହିଥିବ ସଦା ଭକ୍ତି ତୁମରି ଚରଣେ ।

ତେଲେଙ୍ଗା ବଜାର, କଟକ-୯

# ସାମ୍ପ୍ରତିକ ଅର୍ଥନୈତିକ ବ୍ୟବସ୍ଥା ଓ ଗାନ୍ଧୀ ବିଚାର

ଶ୍ରୀ ସୌରୀବନ୍ଧୁ କର

ଉଦାରୀକରଣ, ବିଶ୍ୱୀକରଣ ଓ ଘରୋଇକରଣ ଅର୍ଥନୀତିର ସଫଳତା ସମ୍ପର୍କରେ ବର୍ତ୍ତମାନ ନାନା ମତ ପ୍ରକାଶ ପାଇବାକୁ ଆରମ୍ଭ କଲାଣି । ବିଶ୍ୱ ଅର୍ଥନୀତି ବ୍ୟବସ୍ଥାର ରୂପରେଖ ଓ କାର୍ଯ୍ୟକାରିତା ନେଇ ନାନା ସନ୍ଦେହ ପ୍ରକାଶ ପାଉଛି । ସମଗ୍ର ବିଶ୍ୱ ଏକ ନୂତନ ଶତାବ୍ଦୀ ଆଡ଼କୁ ମୁହାଁଇଛି । କିନ୍ତୁ ଏଇ ଶତାବ୍ଦୀରେ ଅର୍ଥନୀତିର ଅବସ୍ଥା କ'ଣ ହେବ– ଉତ୍ପାଦନ ଓ ବଜାର ପରସ୍ପର କିପରି ନିୟନ୍ତ୍ରିତ ହେବେ, ସେ ସମ୍ପର୍କରେ ସ୍ପଷ୍ଟ ଧାରଣା ଦେଖା ଯାଉନାହିଁ । ଉତ୍ପାଦନ ନିଃସନ୍ଦେହ ଭାବରେ ହେବ ବୋଲି କହିବା ଓ ତା' ଉପରେ ଗୁରୁତ୍ୱ ଦେବା ଫଳରେ କେତେଗୁଡ଼ିଏ ମୁଖ୍ୟ ସମସ୍ୟା ମୁଣ୍ଡ ଟେକିଛି । ଲାଭାଂଶ କମିଛି, ବେକାରୀ ବଢ଼ିଛି, ବଜାର ସଙ୍କୁଚିତ ହୋଇ ଯାଇଛି । ଏପରିକି ଆନ୍ତର୍ଜାତିକ ଶ୍ରମ ସଂସ୍ଥା (ILO) ବେକାରୀ ଖୁବ୍ ବଢ଼ିବ ବୋଲି ଚେତାବନୀ ଶୁଣେଇଛି । ସମଗ୍ର ବିଶ୍ୱ ନିଯୁକ୍ତି ଅବସ୍ଥା ବଡ଼ ସଂଗୀନ ବୋଲି ଆନ୍ତର୍ଜାତିକ ଶ୍ରମ ସଙ୍ଗଠନର ସାଧାରଣ ନିର୍ଦ୍ଦେଶକ ମିଃ ମାଇକେଲ ତାଙ୍କ ରିପୋର୍ଟରେ କହିଛନ୍ତି ।

ମନରେ ପ୍ରଶ୍ନ ଉଠେ ଅର୍ଥନୈତିକ ପରିସ୍ଥିତି ଯାହା ସୃଷ୍ଟି ହୋଇଛି, ତାହା କ'ଣ ସାମୟିକ । କେତେକଙ୍କ ମତରେ ୩୦ ମସିହା ବେଳେ ଯେପରି ଆର୍ଥିକ ସଙ୍କଟ ଦେଖା ଦେଇଥିଲା ଏହା ଠିକ୍ ସେହିପରି ଅସ୍ଥାୟୀ । ବର୍ତ୍ତମାନର ସମସ୍ୟା ବର୍ତ୍ତମାନ ଅର୍ଥ ବ୍ୟବସ୍ଥାରୁ ସୃଷ୍ଟି ହୋଇଛି । ୧୯୩୦ ମସିହାରେ ଯେଉଁ ଆର୍ଥିକ ଅବସ୍ଥା ଦେଖା ଦେଇଥିଲା, ତା' ମୂଳରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଭାବ । ଦ୍ୱିତୀୟ ବିଶ୍ୱଯୁଦ୍ଧର ଆର୍ଥିକ ପ୍ରଭାବ ଫଳରେ ୭୦ ମସିହା ପର୍ଯ୍ୟନ୍ତ ପ୍ରଗତିଶୀଳ ରାଷ୍ଟ୍ରଗୁଡ଼ିକର ବିକାଶ ହେବାକୁ ଲାଗିଥିଲା । ୭୦ ମସିହା ପରେ ଆରମ୍ଭ ହେଲା ନିଯୁକ୍ତି କ୍ଷେତ୍ରରେ ହ୍ରାସତା ।

ଶୀତଳ ଯୁଦ୍ଧ ପରେ ଏବଂ ନିରସ୍ତ୍ରୀକରଣ ପାଇଁ ଆହ୍ୱାନ ବହୁଭାବରେ ଉତ୍ପାଦନ ଓ ନିଯୁକ୍ତି ହ୍ରାସ କରିବାକୁ ଆରମ୍ଭ କଲା । ଦ୍ୱିତୀୟରେ ସମଗ୍ର ବ୍ୟବସ୍ଥା ଥିଲା ବିକାଶ ଆଧାରିତ । ବିକାଶର ସଂଜ୍ଞା ନିରୂପିତ ହୋଇ ନଥିଲା । ଉତ୍ପାଦନର ବୃଦ୍ଧି ଘଟିଲେ ନିଯୁକ୍ତି ବଢ଼େ ଓ ସେହି ଅନୁସାରେ ଆୟ । ଉତ୍ପାଦନ ବାରମ୍ବାର ବୃଦ୍ଧି ପରିବ ଓ ସେହି ଅନୁପାତରେ ନିଯୁକ୍ତି ଏପରି ଯୁକ୍ତିକୁ ଗ୍ରହଣ କରିବା ଭୁଲ । କାରଣ ଉତ୍ପାଦନ ସଦାସର୍ବଦା ବଢ଼େ ନାହିଁ ।

ନିଯୁକ୍ତି ମଧ୍ୟ ନିର୍ଭର କରେ ବୈଷୟିକ ଜ୍ଞାନର ପ୍ରୟୋଗ ଏବଂ କାର୍ଯ୍ୟ ଦକ୍ଷତା ଉପରେ । ଯନ୍ତ୍ରପାତିର ବ୍ୟବହାରକୁ ଅନ୍ଧ ଭାବରେ ପ୍ରୟୋଗ କରିବା ଦ୍ୱାରା ଏହା ନିଯୁକ୍ତି ଉପରେ ପ୍ରଭାବ ପକାଏ ଅର୍ଥାତ୍ ଯେତିକି ମାନବସମ୍ବଳ ଆବଶ୍ୟକ ହେବା କଥା, ତାଠାରୁ କମ୍ ଆବଶ୍ୟକ କରେ । ଉତ୍ପାଦନ କ୍ଷେତ୍ରରେ ବ୍ୟାପକ ଯନ୍ତ୍ରପାତିର ପ୍ରୟୋଗ ନିଯୁକ୍ତି ହ୍ରାସ କରାଏ । ଉତ୍ପାଦନ ବଢ଼ି ଗଲେ । ନିଯୁକ୍ତି କମିଯାଏ । ବ୍ୟବଧାନ ଏତେ ହୁଏ ଯେ ଓଲଟା ବେକାରୀ ସମସ୍ୟା ସୃଷ୍ଟି କରେ ।

ବିଭିନ୍ନ ଯନ୍ତ୍ରପାତିର ପ୍ରୟୋଗ ମଣିଷକୁ ଅକ୍ଷମ ଓ ଅଯୋଗ୍ୟ କରି ପକାଏ । କାରଣ ମଣିଷ ସବୁବେଳେ ଏହି ଯନ୍ତ୍ରପାତି ଉପରେ ହିଁ ନିର୍ଭର କରେ । ସେମାନେ ନିଜେ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ସକ୍ଷମ ହୁଅନ୍ତି ନାହିଁ ଏବଂ ସେମାନଙ୍କର ମାନସିକ ଦକ୍ଷତାରେ ହ୍ରାସ ଘଟେ । ପ୍ରତ୍ୟେକ କର୍ମୀମାନଙ୍କ ମଧ୍ୟରେ, ମଣିଷ ମଣିଷ ଭିତରେ ମାନବିକ ସମ୍ପର୍କ ବଦଳରେ ଏକ ଯାନ୍ତ୍ରିକ ସମ୍ପର୍କ ଗଢ଼ିଉଠେ ।

ଯାନ୍ତ୍ରିକ ବ୍ୟବହାର ଫଳରେ ବର୍ଦ୍ଧିତ ଉତ୍ପାଦନ ପାଇଁ କଞ୍ଚାମାଲର ଅଭାବ ଘଟେ । ଫଳରେ ଉତ୍ପାଦନକୁ ଅବ୍ୟାହତ ରଖିବା ସମ୍ଭବ ହୋଇ ପାରେ ନା । ଉତ୍ପାଦନଭିତ୍ତିକ ଅର୍ଥନୀତି ତିଷ୍ଠି ରହିବା ସମ୍ଭବ ନୁହେଁ ।

କିଛି ଲୋକମାନଙ୍କ ହାତରେ ଅଧିକା ଅର୍ଥ ହେବା ଫଳରେ ବ୍ୟବହୃତ ଦ୍ରବ୍ୟ ଉପରୁ ଖର୍ଚ୍ଚ ହ୍ରାସ ହୁଏ । ସେବା କ୍ଷେତ୍ର ଉପରେ ବେଶି ଚାପ ପଡ଼େ । ଆୟ ବଢ଼ିବା ସହିତ ସେବା କ୍ଷେତ୍ର ବଢ଼େ । ଫଳରେ ଉତ୍ପାଦନକାରୀ ବଜାରରେ ନିଜ ଉତ୍ପାଦିତ ଦ୍ରବ୍ୟ ବିକ୍ରୀ କରିବାର ସୁବିଧା ପାଏ ନାହିଁ । ଉତ୍ପାଦନ ଓ ବଜାର ଏହା ପରସ୍ପର ଉପରେ ନିର୍ଭରଶୀଳ ହୋଇଥିବା ହେତୁ ବଜାରରେ ଉତ୍ପାଦିତ ଦ୍ରବ୍ୟର ଚାହିଦା ଅଭାବ ହେବା ମାତ୍ରେ ଅର୍ଥନୀତିର ଗତିପଥକୁ ବଦଳାଇ ଦିଆଯିବା ଦ୍ୱାରା ଏହା ଆର୍ଥିକ ଅବସ୍ଥାକୁ ସଂଗୀନ କରେ ।

ଆର୍ଥିକ ଅବସ୍ଥାକୁ ସୁଧାରିବା ବା ଏକ ନୂତନ ଆର୍ଥିକ ବ୍ୟବସ୍ଥା ଗଢ଼ି ତୋଳିବା ପାଇଁ ପ୍ରୟୋଗାତ୍ମକ ବିଚାର ସହିତ ଏହା କିପରି ପ୍ରୟୋଗ କରାଯାଇ ସ୍ଥିର ବିକାଶର ମାଧ୍ୟମ ହେବ, ତାହା ଦେଖିବା ଜରୁରୀ । ମାନବ ସମାଜର ବ୍ୟବହାର ଉପରେ ଅର୍ଥନୈତିକ ବ୍ୟବସ୍ଥା ଗଢ଼ାହୁଏ । ମଣିଷର ବ୍ୟବହାର ତା'ର ଜୀବନ ପ୍ରତି

ଦୃଷ୍ଟିଭଙ୍ଗୀରୁ ସ୍ଥିରୀକୃତ ହୁଏ । ଦିନକରେ କୌଣସି ଆର୍ଥିକ ବ୍ୟବସ୍ଥା ଗଢ଼ା ଯାଇ ପାରେନା । ଏଥିପାଇଁ ମାନବିକ ବ୍ୟବହାର ଓ ମୂଲ୍ୟବୋଧର ଗୁରୁତ୍ୱ ବେଶି । ଏହି ଦୃଷ୍ଟିରୁ ବର୍ତ୍ତମାନର ଅର୍ଥନୀତି ପାଇଁ ଏକ ନୂତନ ଦୃଷ୍ଟିଭଙ୍ଗୀ, ଏକ ନୂତନ ତତ୍ତ୍ୱ ଓ ଏକ ନୂତନ ବିଚାର ପ୍ରୟୋଜନ ।

ଗାନ୍ଧୀଙ୍କର ଅର୍ଥନୀତିକ ବିଚାର ଏହାର ବିକଳ୍ପ କି ? ଏ ପ୍ରଶ୍ନ ସ୍ୱାଭାବିକ ଭାବରେ ମନରେ ଉଠେ । ଗାନ୍ଧିଜୀଙ୍କର ଅର୍ଥନୈତିକ ବିଚାରଧାରା ହିନ୍ଦ୍ ସ୍ୱରାଜରେ କୁହାଯାଇଛି । ଗାନ୍ଧୀବାଦ ବ୍ୟବସ୍ଥାରେ ପ୍ରତ୍ୟେକ ନିଜ ଗୋଡ଼ରେ ନିଜେ ଠିଆ ହେବା ଉପରେ ଗୁରୁତ୍ୱ ଆରୋପ୍ କରାଯାଇଛି । ଗାନ୍ଧିଜୀଙ୍କର ସ୍ୱରାଜ ଦୁଇଟି ସ୍ୱାଧୀନ ସ୍ତମ୍ଭ ଉପରେ ଆଧାରିତ । ପ୍ରଥମ ହେଉଛି ମାନସିକ ଓ ଦ୍ୱିତୀୟ ନୈତିକ । ପ୍ରଥମେ ଅର୍ଥନୀତିକୁ ମନସ୍ତତ୍ତ୍ୱ ଦିଗରୁ ବିଚାର କରିବା । ଯେହେତୁ ମୂଳପୁଞ୍ଜି ସୀମିତ, ଉତ୍ପାଦନ ମନଇଚ୍ଛା ବଢ଼ି ପାରିବ ନାହିଁ । ଯେଉଁମାନେ ଧନୀ, ସେମାନଙ୍କର ମନସ୍ତତ୍ତ୍ୱ ଅଯୌକ୍ତିକ ବିଚାର ଧାରା ଉପରେ ପ୍ରତିଷ୍ଠିତ । ଅର୍ଥନୈତିକ କାର୍ଯ୍ୟକ୍ରମର ମୂଳନିୟମ 'ଆବଶ୍ୟକତା' ଉପରେ ନିର୍ଭର କରେ, ବିଭବ ଉପରେ ନୁହେଁ । ଧନ ପ୍ରାଚୁର୍ଯ୍ୟ ଅସମାନତା ସୃଷ୍ଟି କରେ । କାରଣ ଏହା ଅର୍ଥନୈତିକ ଭୁଲଭ୍ରାନ୍ତିରୁ ସୃଷ୍ଟି । ବିତ୍ତଶାଳୀ ଲୋକମାନଙ୍କ ମନରେ ଲୋଭ ଜନ୍ମେ । ମଣିଷର ଇଚ୍ଛାର କୌଣସି ସୀମା ନାହିଁ । ଏହା ସୀମାହୀନ ବଢ଼ିପାରେ ।

ମଣିଷର ଏହି ସୀମାହୀନ ଇଚ୍ଛାକୁ ମଧ୍ୟ ସୀମିତ କରାଯାଇପାରେ । ଏଠାରେ ମନସ୍ତତ୍ତ୍ୱ ହିଁ କାର୍ଯ୍ୟ କରେ । ମୂଲ୍ୟବୋଧ ମନକୁ ପ୍ରଭାବିତ କରେ ଓ ତାହା ମଣିଷର ବ୍ୟବହାରରେ ପରିବର୍ତ୍ତନ ଆଣେ । ଚେତନଶୀଳ ଭାବରେ ଯେଉଁମାନେ ମୂଲ୍ୟବୋଧରେ ବିଶ୍ୱାସ କରନ୍ତି, ସେମାନଙ୍କର ଆର୍ଥିକ ଅବସ୍ଥା ତାହାଦ୍ୱାରା ପ୍ରଭାବିତ ହୁଏ । ସ୍ୱରାଜର ଲକ୍ଷ୍ୟ ହେଉଛି ମାନବିକ ଆବଶ୍ୟକତାକୁ ସଙ୍କୁଚିତ କରିବା ଏବଂ ଆର୍ଥିକ ଲାଭକୁ ନିର୍ଦ୍ଦିଷ୍ଟ କରିବା । ବର୍ତ୍ତମାନର ଅର୍ଥନୈତିକ ବ୍ୟବସ୍ଥାରେ ଆଖିଦୃଶିଆ ଅର୍ଥ ଉପାର୍ଜନ ହୋଇଥିଲେ ବି, ବ୍ୟକ୍ତି ନିଜକୁ ଅଧିକ ରୋଜଗାର କରିବାରୁ ବିରତ ହୁଏ ନାହିଁ । ଯଥେଷ୍ଟ ହୋଇଗଲା ବୋଲି ଶବ୍ଦ ଅର୍ଥନୈତିକ ଶବ୍ଦକୋଷରେ ନାହିଁ । ତେଣୁ କେବଳ ସମ୍ପନ୍ନ ବ୍ୟକ୍ତିବିଶେଷଙ୍କ କଥା ବିଚାର କରି ଯଦି ଆମେ ଅର୍ଥନୀତିର ବିକାଶ କଥା ଭାବିବା, ତେବେ ଦେଶର ମୁଷ୍ଟିମେୟ ଲୋକ କେବଳ ଧନୀ ଓ ବହୁ ରାଷ୍ଟ୍ର ମଧ୍ୟରେ ଖୁବ୍ କମ୍ ସଂଖ୍ୟକ ରାଷ୍ଟ୍ର ଧନୀ ରାଷ୍ଟ୍ର ହେବେ । ଦାରିଦ୍ର୍ୟ ବହୁଲୋକଙ୍କ ପାଇଁ ଉଦ୍ଦିଷ୍ଟ ହେବ ।

୧୯୩୪ ନଭେମ୍ବର ୨ ତାରିଖରେ ଗାନ୍ଧିଜୀ ହରିଜନ ପତ୍ରିକାରେ ଲେଖିଥିଲେ, "I would categorically state my conviction that the craze for mass production is responsible for the world crisis. Granting for the moment that machinery may supply all the needs of humanity, still, it would concentrate production in paticular areas, so that you would have to go about in a roundabout way to regulate distribution whereas, if there is production and distribution both in the respective areas where things are required, it is automatically regulated, and there is less chance for found, non for speculation."

ବର୍ତ୍ତମାନ ବିଶ୍ୱୀକରଣ ବ୍ୟବସ୍ଥା ଦ୍ୱାରା ଉତ୍ପାଦନ ଓ ବିତରଣ ପ୍ରକ୍ରିୟାରେ ସାଧାରଣ ଲୋକେ ସମ୍ପୂର୍ଣ୍ଣ ଭାବେ ଅସହାୟ । କ୍ଷୁଦ୍ର କ୍ଷୁଦ୍ର ଉଦ୍ୟୋଗଗୁଡ଼ିକ ମାଧ୍ୟମରେ ଉତ୍ପାଦନ ଏବଂ ସ୍ୱରାଜ ଏହି ସମସ୍ୟାକୁ ସମାଧାନ କରି ପାରନ୍ତା ବୋଲି ଗାନ୍ଧିଜୀଙ୍କର ମତ । ଗାନ୍ଧିଜୀ କହିଥିଲେ, "ଏପରି ଗୋଟିଏ ସମୟ ଆସୁଛି, ଯେତେବେଳେ କି ଯେଉଁମାନେ ଅଧିକରୁ ଅଧିକ ଦ୍ରବ୍ୟ ବୃଦ୍ଧି କରିବାର ପାଗଳ ଦଉଡ଼ରେ ମାତିଛନ୍ତି ଏବଂ ପୃଥିବୀର ଯଥାର୍ଥ ଉପାଦାନ ତଥା ଯଥାର୍ଥ ଜ୍ଞାନର ତଦ୍ୱାରା ବୃଦ୍ଧି କରୁଛନ୍ତି ବୋଲି ବୃଥା ଭାବୁଛନ୍ତି, ସେମାନେ ମଧ୍ୟ ପଛକୁ ଫେରି ଆସିବେ ଏବଂ "ଆମେ କ'ଣ କଲୁ ? ବୋଲି କହିବେ ।"

ଗାନ୍ଧିଜୀ ବିଶ୍ୱାସ କରୁଥିଲେ ଯେ ମଣିଷର ଆବଶ୍ୟକତାକୁ ପୂରଣ କରିବା ପାଇଁ ଏ ଭୂମି ଯେତିକି ଦେବାକଥା ଦେଉଛି ତା'ର ଲୋଭକୁ ମେଣ୍ଟାଇବାକୁ ନୁହେଁ । ମଣିଷର ଲୋଭକୁ ସଙ୍କୁଚିତ କରାଯାଇ ପାରିବ ଓ କେତେକଙ୍କ ହାତରେ ଏକୀଭୂତ ସମ୍ପତ୍ତିର ବିକେନ୍ଦ୍ରୀତ ହୋଇ ରହିବ । ସେ ଖୁବ୍ ଦୃଢ଼ ଭାବରେ କହିଲେ, "ମୁଷ୍ଟିମେୟ ବ୍ୟକ୍ତିଙ୍କ ହାତରେ ସମ୍ପତ୍ତି ଓ କ୍ଷମତାକୁ ସଂକେନ୍ଦ୍ରୀତ କରି ରଖିବା ଏବଂ ତଦ୍ୱାରା ବହୁ ସଂଖ୍ୟକ ଲୋକଙ୍କର ଶୋଷଣ କରିବା ଲାଗି ଉଦ୍ଦିଷ୍ଟ ଯନ୍ତ୍ରୋତ୍ପାଦନର ଏହି ସଂଗଠନକୁ ମୁଁ ସମ୍ପୂର୍ଣ୍ଣ ଭାବରେ ଭୁଲ୍ ବୋଲି ବିଚାର କରୁଛି ।"

ଗାନ୍ଧିଜୀଙ୍କ ଅର୍ଥନୈତିକ ବିଚାରଧାରା ସମ୍ପୂର୍ଣ୍ଣ ରୂପରେଖକୁ ପରିବର୍ତ୍ତନ କରିବାକୁ କହି ନାହିଁ । ଉଦ୍ୟୋଗୀକରଣ ଉପରେ ଗୁରୁତ୍ୱ ଦେବାବେଳେ, ଏହାକୁ ସୀମିତ କରିବା ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରିଛନ୍ତି । ସେ କୁଟୀରଶିଳ୍ପ ଓ ଘରେ ବ୍ୟବହୃତ ଯନ୍ତ୍ରକୁ ସ୍ୱାଗତ କରିବା ବେଳେ ବିଦ୍ୟୁତଚାଳିତ ଯନ୍ତ୍ର ପ୍ରବର୍ତ୍ତନ ହୋଇ ଲୋକଙ୍କୁ କାର୍ଯ୍ୟଚ୍ୟୁତ କରିବାକୁ ଗ୍ରହଣ କରିନାହାନ୍ତି; ଯାହା ବର୍ତ୍ତମାନ ବିଶ୍ୱ ବଜାର ଅର୍ଥନୀତିରେ ଦେଖା ଦେଇଛି ।

ଅର୍ଥନୈତିକ କାର୍ଯ୍ୟ ଅନ୍ୟାନ୍ୟ କାର୍ଯ୍ୟଠାରୁ ପୃଥକ୍ ନୁହେଁ । ଏହା ଜୀବନର ଏକ ମାର୍ଗ । ଯାହା ସମ୍ମିଳିତ ମନ ଓ ସମ୍ମିଳିତ

ମୂଲ୍ୟବୋଧ ସହିତ ସମ୍ପର୍କ ରଖେ। ମଣିଷ ଜୀବନଠାରୁ ଅର୍ଥନୀତିକୁ ଅଲଗା ରଖି ହେବନି। ମଣିଷ ହିଁ ଅର୍ଥନୀତିର ମୁଖ୍ୟ। ଅର୍ଥ (ସମ୍ପତ୍ତି) ଉପରେ ଗୁରୁତ୍ୱ ଦେଇ, ମଣିଷକୁ ଅଲଗା କରିଦେବା ନିର୍ଦ୍ଦିଷ୍ଟ ଲକ୍ଷ୍ୟରୁ ବିଚ୍ୟୁତ ହେବା ବା ବିକାଶର ବାଧକ ହେବ।

ଉଦ୍ୟୋଗବାଦ କିପରି ଭାବରେ ସମଗ୍ର ମାନବଜାତିର ବାଧକ ହେବ, ସେ ବିଷୟ ଉଲ୍ଲେଖ କରି ସେ କହିଛନ୍ତି, " ଉଦ୍ୟୋଗବାଦ ଦିନେ ସମଗ୍ର ମାନବଜାତି ଲାଗି ଏକ ଅଭିଶାପରେ ପରିଣତ ହୋଇଯିବ। ଗୋଟିଏ ଜାତି ଆଉ ଗୋଟିଏ ଜାତିକୁ ଶୋଷଣ କରିବା, ଏକଥା କଦାପି ଚିରଦିନ ନିମନ୍ତେ ସମ୍ଭବ ହେବ ନାହିଁ।" ସେ ତେଣୁ ଉଦ୍ୟୋଗୀକରଣ ଉପରେ ଗୁରୁତ୍ୱ ନଦେଇ କୁଟୀର ଶିଳ୍ପ ଉପରେ ଗୁରୁତ୍ୱ ଦେଇଛନ୍ତି, ଯାହା ବର୍ତ୍ତମାନ ସମଗ୍ର ବିଶ୍ୱର ଲୋକେ ଅନୁଭବ କରିବାକୁ ଆରମ୍ଭ କଲେଣି। ବର୍ତ୍ତମାନ ଉଦ୍ୟୋଗିକ ସମାଜର ଉତ୍ପାଦନ ବ୍ୟବସ୍ଥାରେ ନୈତିକ ସମସ୍ୟାକୁ ସଙ୍କୁଚିତ କରି ଦିଆଯାଇଛି। ଅର୍ଥନୈତିକ ବ୍ୟବସ୍ଥାର ସାମାଜିକ ଓ ନୈତିକ ପରିଣତିକୁ କୌଣସି ଯୁକ୍ତି ନଥାଇ ମନମୁଖି ଭାବରେ ଅର୍ଥନୀତିକୁ କଲ୍ୟାଣ ଦିଗରୁ ଅଲଗା ରଖା ଯାଇଛି। ଏ ସମ୍ପର୍କରେ ଅର୍ଥନୀତିରେ ନୋବେଲ ପୁରସ୍କାର ପାଇଥିବା ବିଶିଷ୍ଟ ଅର୍ଥନୀତିଜ୍ଞ ଡକ୍ଟର ଅମର୍ତ୍ତ୍ୟ ସେନ୍ ଅର୍ଥନୀତିରେ କଲ୍ୟାଣକର ଦିଗ ପ୍ରତି ଗୁରୁତ୍ୱ ଦେଇଛନ୍ତି। ସେ କହିଛନ୍ତି, "The decision to keep economics 'value-free' would, of course, militate against the subject of welfare economics as such." ଡକ୍ଟର ସେନଙ୍କୁ ଅର୍ଥନୀତିର କଲ୍ୟାଣକର ଦିଗ ପ୍ରତି ଦୃଷ୍ଟି ଦେବା ହେତୁ ଓ ସାଧାରଣ ଲୋକଙ୍କ ଦୁଃଖସୁଖ ସହିତ ଅର୍ଥଶାସ୍ତ୍ରକୁ ସାମିଲ କରିବାର ପାଇଁ ଯେଉଁ ପ୍ରୟାସ ସେଥିପାଇଁ ନୋବେଲ ପୁରସ୍କାର ଦିଆଯାଇଛି। ନୋବେଲ ପୁରସ୍କାରର ଏହି ବିଷୟ ଗାନ୍ଧୀଙ୍କ ବିଷୟର ନିକଟତମ ବିଷୟ।

ମନୁଷ୍ୟର ଗୁଣାତ୍ମକ ଜୀବନ ତା'ର ଉପଭୋକ୍ତାବାଦ ଜୀବନର ବିରୋଧୀ। ସରଳ ଜୀବନଯାପନ ସାମଗ୍ରିକ ବିକାଶର ସହାୟକ ଓ ପ୍ରଗତିର ସୂଚକ। ଅର୍ଥନୈତିକ ସମାନତା ହେଉଛି ଅସଲ ଚାବିକାଠି। ପୁଞ୍ଜି ଓ ଶ୍ରମ ମଧ୍ୟରେ ଥିବା ବିବାଦକୁ ଦୂର କରି ପାରିଲେ ବା ଏହାକୁ ସଙ୍କୁଚିତ କରି ପାରିଲେ ଅର୍ଥନୈତିକ ପ୍ରଗତି ସହଜ ହେବ। ଗାନ୍ଧୀ ଏଥିପାଇଁ ସମବାୟ ସଂସ୍ଥା ଉପରେ ଗୁରୁତ୍ୱ ଦେବା ସହିତ ଟ୍ରଷ୍ଟୀ ବ୍ୟବସ୍ଥା ଉପରେ ଗୁରୁତ୍ୱ ଦେଇଛନ୍ତି। ଗାନ୍ଧୀଙ୍କର ଟ୍ରଷ୍ଟୀ ବ୍ୟବସ୍ଥାର ପ୍ରୟୋଗତମ ଦିଗଟିକୁ ଦେଖାଯାଉ।

(୧) ସମତାଭିତ୍ତିକ ସମାଜ ବ୍ୟବସ୍ଥା ପାଇଁ ଏହା ଏକ ଉପାୟ ସୂତ୍ର ଯେଉଁଠାରେ ବର୍ତ୍ତମାନର ମାଲିକ ଶ୍ରେଣୀକୁ ଆପଣାର ସଂସ୍କାର ଲାଗି ଏକ ସୁଯୋଗ ପ୍ରଦାନ କରିବା।

(୨) ସମ୍ପତ୍ତିରେ ବ୍ୟକ୍ତିଗତ ମାଲିକାନାକୁ ସୀମିତ କରିବା।

(୩) ମାଲିକାନାକୁ ନିୟନ୍ତ୍ରିତ କରି ରଖିବା ଓ ଧନର ବ୍ୟବହାରକୁ ସୁନିର୍ଦ୍ଦିଷ୍ଟ କରିବା।

(୪) ରାଷ୍ଟ୍ର ଦ୍ୱାରା ନିୟନ୍ତ୍ରିତ ଟ୍ରଷ୍ଟୀ ବ୍ୟବସ୍ଥାର ସାମାଜିକ ସ୍ୱାର୍ଥ ପ୍ରତି ଦୃଷ୍ଟି ଓ ଗୁରୁତ୍ୱ

(୫) ସର୍ବାଧିକ ଆୟର ସୀମା ଧାର୍ଯ୍ୟ କରିବା।

(୬) ସମାଜର ଆବଶ୍ୟକତା ଦ୍ୱାରା ଉତ୍ପାଦନର ଧରଣ ଓ ପରିମାଣ ନିର୍ଦ୍ଧାରଣ।

ତେଣୁ ଗାନ୍ଧିଜୀ, "ଯେଉଁ ଅର୍ଥନୀତି ନୈତିକ ମୂଲ୍ୟଗୁଡ଼ିକ ଲାଗି କୌଣସି ଅପେକ୍ଷା ରଖେ ନାହିଁ ବା ସେଗୁଡ଼ିକୁ ଏଡ଼ି ଦେଉଥାଏ, ତାହା ଆଦୌ ଯଥାର୍ଥ ଅର୍ଥନୀତି ନୁହେଁ। ଅହିଂସାର ନିୟମଟିକୁ ଅର୍ଥନୀତିର କ୍ଷେତ୍ର ମଧ୍ୟକୁ ସମ୍ପ୍ରସାରିତ କରି ନେବାର ଅର୍ଥ ହେଉଛି ଆନ୍ତର୍ଜାତିକ ବାଣିଜ୍ୟକୁ ନିୟନ୍ତ୍ରିତ କରିବାର ଯାବତୀୟ ପ୍ରସଙ୍ଗରେ ନୈତିକ ମୂଲ୍ୟଗୁଡ଼ିକୁ ମଧ୍ୟ ଗୋଟିଏ ଗୋଟିଏ ନିର୍ଣ୍ଣାୟକ ରୂପେ ସ୍ୱୀକାର କରିବା।" ମାର୍କସ୍ ଦେଇଥିବା ସଂଜ୍ଞା, " ପ୍ରତ୍ୟେକ ମନୁଷ୍ୟତାର ଆବଶ୍ୟକତା ଅନୁସାରେ ପାଇବ" ଆର୍ଥିକ ସମାନତା ଆଡ଼କୁ ଉଦ୍ଦିଷ୍ଟ। ଧନୀ ଓ ଦରିଦ୍ର ମଧ୍ୟରେ ସମାନତା ପାଇଁ ସମାନ ବିତରଣ ନୀତି ଓ ମନୁଷ୍ୟ ପ୍ରକୃତିରେ ପରିବର୍ତ୍ତନ ଆବଶ୍ୟକ। ବର୍ତ୍ତମାନର ବିଶ୍ୱୀକରଣ, ଉଦାରୀକରଣ ଓ ଘରୋଇକରଣ–ଗାନ୍ଧୀଙ୍କର ବିଚାରଧାରାର ବିରୋଧରେ ଯିବା ଦ୍ୱାରା ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ବଢ଼ିବାରେ ଲାଗିଛି ଏବଂ ଦିନକୁଦିନ ରାଷ୍ଟ୍ରର ଲୋକମାନେ ଦାରିଦ୍ର୍ୟର ସୀମାରେଖା ତଳେ ବାସ କରୁଛନ୍ତି। ବର୍ତ୍ତମାନ ଭାରତରେ ଉଦାର ଅର୍ଥନୀତି ବିଶ୍ୱ ବଜାର ସହିତ ନିଜକୁ ଯୋଡ଼ିବାକୁ ଚେଷ୍ଟା କରାବେଳେ ଶିକ୍ଷା ଓ ସାମାଜିକ କ୍ଷେତ୍ର ପ୍ରତି ଗୁରୁତ୍ୱ ଦେଉ ନାହିଁ। ଯାହାର ପରିଣତି ଭାରତର ନିଜସ୍ୱ ଅର୍ଥନୀତିର ବାହକ 'ସମବାୟ ଆନ୍ଦୋଳନ' କ୍ରମଶଃ ପଛକୁ ଠେଲି ହୋଇ ଯାଇ ସ୍ୱାବଲମ୍ବନଶୀଳ ଅର୍ଥନୀତି ବିପନ୍ନ ହୋଇଛି ଏବଂ ଭାରତ ନିଜର ଆର୍ଥିକ ସ୍ୱାଧୀନତା ବିପନ୍ନ କରିବା ଦିଗରେ ଆଗେଇ ଚାଲିଛି।

---

ପ୍ଲଟ୍ ନଂ–୬୦୧୨/୫୮୭୩,
ଗଜପତିନଗର, ଭୁବନେଶ୍ୱର–୭୫୧୦୦୫

# ଟେୱା ପ୍ରକଳ୍ପ–ମହିଳା ଚାଷୀ ସଚେତନତା ଦିଗରେ ଏକ ସଫଳ ପଦକ୍ଷେପ

ଶ୍ରୀ ସୁକାନ୍ତ କୁମାର ପଣ୍ଡା

କୃଷି କ୍ଷେତ୍ରରେ ମହିଳାମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏକ ସମୀକ୍ଷାରୁ ଜଣାଯାଏ ଯେ ଗ୍ରାମ୍ୟସ୍ତରୀୟ ମହିଳା ଚାଷ କାର୍ଯ୍ୟର ଶତକଡ଼ା ୫୦.୬୬ ଭାଗ, ଆନୁଷଙ୍ଗିକ କୃଷି କାର୍ଯ୍ୟର ୨.୧୯ ଭାଗ, ଅଣ–ଆନୁଷଙ୍ଗିକ କାର୍ଯ୍ୟରେ ୬.୮୮ ଭାଗ କାର୍ଯ୍ୟ କରିଥାଆନ୍ତି । ବର୍ଷ ତମାମ ସମୁଦାୟ ଚାଷ କାର୍ଯ୍ୟରେ ମହିଳା ଚାଷୀ ୧୦୫.୪ ଦିନ ନିୟୋଜିତ ହୋଇଥାନ୍ତି । ଜମି ଚାଷ କାର୍ଯ୍ୟକୁ ବାଦ୍ ଦେଲେ ମହିଳାମାନେ ପ୍ରାୟ ସମସ୍ତ କୃଷି କାର୍ଯ୍ୟ କରିଥାଆନ୍ତି ।

ତେଣୁ ୧୯୮୭ ମସିହାରେ ମହିଳା ଚାଷୀଙ୍କ ଉନ୍ନତି ପାଇଁ ଡେନ୍‌ମାର୍କ ସରକାରଙ୍କ ସହାୟତାରେ ଟେୱା ପ୍ରକଳ୍ପର ଶୁଭାରମ୍ଭ କରାଯାଇଥିଲା । ଟେୱା ବା ଚାଷ କାର୍ଯ୍ୟରେ ନିୟୋଜିତ ମହିଳାମାନଙ୍କ ପାଇଁ ତାଲିମ ଓ ସମ୍ପ୍ରସାରଣ ନାମରେ ନାମିତ ଏହି ନୂତନ ପ୍ରକଳ୍ପଟି ବଲାଙ୍ଗୀର ସମେତ ପୁରୀ, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାରେ ଆରମ୍ଭ ହୋଇଥିଲା । ଦ୍ୱିତୀୟ ପର୍ଯ୍ୟାୟରେ ଅବିଭକ୍ତ କୋରାପୁଟ ସମେତ କେନ୍ଦୁଝର, ସମ୍ବଲପୁର ଏବଂ ସୁନ୍ଦରଗଡ଼ ଜିଲ୍ଲାକୁ ଅନ୍ତର୍ଭୁକ୍ତ କରାଯାଇଛି ।

ଏହି ପ୍ରକଳ୍ପ ଦ୍ୱାରା ମହିଳାମାନେ କୃଷି ଓ ଆନୁଷଙ୍ଗିକ କୃଷି ସମ୍ପର୍କରେ ବିଭିନ୍ନ ଜ୍ଞାନ କୌଶଳ ଆହରଣ କରି ଆତ୍ମନିର୍ଭରଶୀଳ ହେବା ସଙ୍ଗେ ସଙ୍ଗେ ପରିବାରର ଆର୍ଥିକ ଉନ୍ନତି ଆଣିବା ଦିଗରେ କିପରି ସଫଳ ହୋଇପାରନ୍ତି ତା'ର ଏକ ପ୍ରକୃଷ୍ଟ ଉଦାହରଣ ହେଉଛି, ଢେଙ୍କାନାଳ ଜିଲ୍ଲାର ଲମ୍ବୋଦରପୁର ଗାଁ । ଟେୱା ଯୋଜନା ଅନ୍ତର୍ଭୁକ୍ତ ଢେଙ୍କାନାଳ ଜିଲ୍ଲାର ଗୋଟିଏ ଛୋଟିଆ ଗାଁ ଲମ୍ବୋଦରପୁର । ଟେୱା ପ୍ରକଳ୍ପର କାର୍ଯ୍ୟରତା, ମହିଳା ଗ୍ରାମ୍ୟ କୃଷି କର୍ମଚାରୀଙ୍କ ପରାମର୍ଶ ଓ ସକ୍ରିୟ ସହଯୋଗରେ ସେହି ଗାଁର ମହାଲକ୍ଷ୍ମୀ ମହିଳା ସମିତି ଗଠନ କରିଥିବା କ୍ଷୁଦ୍ର ଓ ମଧ୍ୟବିତ୍ତ କୃଷୀ ପରିବାର ମହିଳାମାନେ ଛତୁଚାଷ ଆରମ୍ଭ କରିଥିଲେ । ସେମାନଙ୍କର ସଙ୍ଗଠିତ ମନୋଭାବ ଓ ଅଦ୍ୟମ ପ୍ରଚେଷ୍ଟା ସେମାନଙ୍କୁ ଆଜି ସଫଳତାର ଶୀର୍ଷରେ ପହଞ୍ଚାଇ ପାରିଛି । ବ୍ୟାଙ୍କ୍ ତଥା ଜିଲ୍ଲା ପ୍ରଶାସନ ସହାୟତାରେ ଗ୍ରାମର ଅଧିକାଂଶ ମହିଳା ବର୍ଷତମାମ ଛତୁଚାଷ କରିଆସୁଛନ୍ତି ।

ସମିତି ଦ୍ୱାରା ଉତ୍ପାଦିତ ଛତୁକୁ ବ୍ୟବସାୟିକ ଭିତ୍ତିରେ ବିକ୍ରିବଟା କରିବା ପାଇଁ ଜଣେ ଶିକ୍ଷିତ ବେକାର ମହିଳା ଓ ଜଣେ ଯୁବକଙ୍କ କର୍ମ ସଂସ୍ଥାନ ହୋଇପାରିଛି । ସମିତିର ସଭ୍ୟାମାନେ ଏବେ ଛତୁଚାଷ ସହ ଉନ୍ନତ ପନିପରିବା ତଳି ଉତ୍ପାଦନ କରି ବିକ୍ରି କରିବା ପାଇଁ ଯୋଜନା କରିଛନ୍ତି । ଏତଦ୍‌ବ୍ୟତୀତ ସେମାନେ ଆଖପାଖ ଗାଁର ଆଗ୍ରହୀ ମହିଳାମାନଙ୍କୁ ଲାଭଜନକ ଛତୁଚାଷ ପାଇଁ ତାଲିମ ଦେଇ ଆତ୍ମନିର୍ଭରଶୀଳ ହେବା ପାଇଁ ପ୍ରେରଣା ଯୋଗାଇ ଆସୁଛନ୍ତି ।

ଟେୱା ପ୍ରକଳ୍ପ ଓଡ଼ିଶାର ମହିଳା ଚାଷୀମାନଙ୍କ ବିକାଶର ଏକ ନୂତନ ମାର୍ଗ ଉନ୍ମୋଚିତ କରିଛି । ଉତ୍ପାଦନ ବୃଦ୍ଧି ନିମନ୍ତେ ମହିଳା ଚାଷୀଙ୍କର ସଚେତନତା ନିତାନ୍ତ ଜରୁରୀ । ଏଦିଗରେ ଟେୱା ଯୋଜନା ଏକ ସଫଳ ପଦକ୍ଷେପ ।

---

ସ. ସୂଚନା ଅଧିକାରୀ,
ଭୁବନେଶ୍ୱର

# ନୂତନ କୃଷିନୀତିରେ କୃଷି ପ୍ରୋତ୍ସାହନ ଓ ପୁଞ୍ଜି ଲଗାଣ ନିଗମ

ଡ଼ଃ ଯୋଗେଶ ରାଉତ

ଓଡ଼ିଶାରେ ୬୫ ଭାଗ ଲୋକ କୃଷି ଉପରେ ନିର୍ଭରଶୀଳ । ଓଡ଼ିଶାରେ ପ୍ରଚୁର ବର୍ଷା ସତ୍ତ୍ୱେ ୧୯୫୦-୫୧ ମସିହାରେ ଖାଦ୍ୟ ଶସ୍ୟ ଉତ୍ପାଦନ ୨୬ ଲକ୍ଷ ଟନ୍ ଥିବା ସ୍ଥଳେ ୧୯୯୪-୯୫ରେ ୮୦.୦୦ ଲକ୍ଷ ଟନ୍ ଉତ୍ପାଦିତ ହୋଇଥିଲା, ଅର୍ଥାତ ମାତ୍ର ୩ ଗୁଣକୁ ବୃଦ୍ଧି ପାଇଥିଲା । ଅବଶ୍ୟ ବଢ଼ି ଓ ମରୁଡ଼ି ହେତୁ ପର ବର୍ଷମାନଙ୍କରେ ଖାଦ୍ୟ ଉତ୍ପାଦନ କମିଛି କିନ୍ତୁ ଭାରତର ଖାଦ୍ୟ ଶସ୍ୟ ଉତ୍ପାଦନ ୧୯୫୦-୫୧ରେ ୫୦୦.୦୦ ଲକ୍ଷ ଟନ୍ ଥିବା ସ୍ଥଳେ ୧୯୯୭-୯୮ରେ ୧୯୯୮ ଲକ୍ଷ ଟନ୍ ହୋଇଥିଲା । ଅର୍ଥାତ ଚାରିଗୁଣକୁ ବୃଦ୍ଧି ପାଇଲା । ପୁନଶ୍ଚ, ପଞ୍ଜାବ ଓ ହରିଆନାର ସ୍ୱପ୍ନ ଜମି ଓଡିଶାର ସ୍ୱପ୍ନ ଜମି ସହିତ ସମାନ ଥିଲେ ହେଁ, ଭାରତର ଖାଦ୍ୟ ଭଣ୍ଡାରକୁ ପଞ୍ଜାବ ଶତକଡା ୧୧ ଭାଗ, ହରିଆନା ଶତକଡା ୬ ଯୋଗାଇ ଥିବା ସ୍ଥଳେ ଓଡିଶାର ଅଂଶ ମାତ୍ର ଶତକଡା ୪ ଭାଗ ଥିଲା । ଓଡିଶାର ଶିକ୍ଷିତ ସଂଖ୍ୟା ବୃଦ୍ଧି ସହିତ ବେକାରୀ ମଧ୍ୟ ବୃଦ୍ଧି ପାଉଛି । ସେମାନେ ଶାରୀରିକ ଶ୍ରମକାତର ହୋଇ କୃଷି କାମ ନକରିବାରେ ୨୦ ଲକ୍ଷ ଶିକ୍ଷିତ ବେକାର ହେଲେଣି । କାମଧନ୍ଦା ନପାଇ ବିଶୃଙ୍ଖଳା ସୃଷ୍ଟିର କାରଣ ହେଲେଣି ଅଥଚ ଓଡିଶାର କେତେକ ଜଳସେଚିତ ଜମି ଅଞ୍ଚଳରେ କୃଷି ଶ୍ରମିକମାନଙ୍କର ଅଭାବ ହେଲାଣି ।

ଉକ୍ତ ପ୍ରତିପେକ୍ଷୀରେ ଆମର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ କୃଷି ଉତ୍ପାଦନ ୨ ଗୁଣ କରିବା, କୃଷିକୁ ଶିଳ୍ପର ମାନ୍ୟତା ଦେଇ ଶିକ୍ଷିତ ବେକାରମାନଙ୍କୁ ଆତ୍ମନିଯୁକ୍ତି ତଥା କୃଷିଶିଳ୍ପରେ ଥଇଥାନ କରିବାପାଇଁ ୧୯୯୬ ଅପ୍ରେଲ ମାସରୁ ବୈପ୍ଳବିକ ନୂତନ କୃଷିନୀତି ପ୍ରଣୟନ କରିଛନ୍ତି । ଉକ୍ତ ନିଗମ କୃଷି ଭିତ୍ତିକ ଶିଳ୍ପ ଓ ଆନୁଷଙ୍ଗିକ କୃଷି ଯୋଜନାରେ ଶିକ୍ଷିତ ବେକାର ମାନଙ୍କ ପାଇଁ ନିଯୁକ୍ତିର ସୁଯୋଗ ସୃଷ୍ଟି ପାଇଁ ବିଭିନ୍ନ ଯୋଜନା ମାନ କରୁଅଛି । ଶିଳ୍ପର ବହୁବିଧ ବିକାଶ ପାଇଁ ଯେଉଁଭଳି ଇପିକଲ ସଂସ୍ଥା ରହିଛି, ସେହିଭଳି କୃଷି କ୍ଷେତ୍ରରେ ଉଦ୍ୟୋଗୀକରଣ ପାଇଁ ୧୯୯୬ ଜୁନ ମାସରୁ ମୁଖ୍ୟମନ୍ତ୍ରୀଙ୍କର ମାନସପୁତ୍ର ଭାବରେ କୃଷି ପ୍ରୋତ୍ସାହନ ଓ ପୁଞ୍ଜି ଲଗାଣ ନିଗମ ବା ଆପିକଲ ନାମକ ଏକ ସଂସ୍ଥା ସୃଷ୍ଟି କରାଯାଇଛି । କୃଷି ଉତ୍ପାଦନ, ବ୍ୟବସାୟ ଓ ରପ୍ତାନୀ କ୍ଷେତ୍ରରେ ଓଡିଶାରେ କି ସୁବିଧା ଅଛି, କିପରି ଅର୍ଥ ବିନିଯୋଗ ହୋଇପାରିବ ସେ ସମ୍ବନ୍ଧରେ ଯୋଜନା ପ୍ରସ୍ତୁତି, ଆଗ୍ରହୀ ଉଦ୍ୟୋଗୀମାନଙ୍କୁ ବୈଜ୍ଞାନିକ ପରାମର୍ଶ, ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା ସମ୍ପର୍କରେ ତଥ୍ୟ, ସହଯୋଗ ଓ ସୁବିଧା ଯୋଗାଇ ଦେବା ଏହି ସଂସ୍ଥାର ଲକ୍ଷ୍ୟ । ବ୍ୟାଙ୍କଭିତ୍ତିକ ଯୋଜନା ପ୍ରସ୍ତୁତି, ଉଦ୍ୟୋଗୀ ଚିହ୍ନଟ, ନୂତନ ଉଦ୍ୟୋଗପାଇଁ ଆବଶ୍ୟକ ତାଲିମ ଆଦି ବ୍ୟବସ୍ଥା କରିବା ମଧ୍ୟ ଏହି ସଂସ୍ଥାର କାମ ହେବ । କୃଷିଭିତ୍ତିକ ଶିଳ୍ପ ପାଇଁ ଘୋଷିତ ବିଭିନ୍ନ ପ୍ରୋତ୍ସାହନ, ଆର୍ଥିକ ରିହାତି ଆଦି ଏହି ସଂସ୍ଥାରୁ ମିଳି ପାରିବ । ଭାରତ ସରକାରଙ୍କର ଖାଦ୍ୟ ପ୍ରକ୍ରିୟାକରଣ ବିଭାଗ, କୃଷିଜାତ ଦ୍ରବ୍ୟ ରପ୍ତାନୀ ସଂସ୍ଥା (ଅପେଡା) ଆଦିରୁ ମିଳୁଥିବା ବିଭିନ୍ନ ସାହାଯ୍ୟ ଆଣି ଓଡିଶାର ଉଦ୍ୟୋଗୀମାନଙ୍କ ନିକଟରେ ଏହି ସଂସ୍ଥା ପହଞ୍ଚାଇବ । ଏହି ଜାତୀୟ ଶିଳ୍ପ ପାଇଁ ଆପିକଲ ଓଡିଶା ସରକାରଙ୍କର ସଂଯୋଗକାରୀ ସଂସ୍ଥା ଭାବରେ କାର୍ଯ୍ୟ କରିବ । ଏହି ସଂସ୍ଥା ମଧ୍ୟ ବିଦେଶୀ ବିଶେଷଜ୍ଞ ବା ସଂସ୍ଥା ବା କମ୍ପାନୀମାନଙ୍କ ସହିତ ସଂଯୋଗ ରକ୍ଷାକରି ସେମାନଙ୍କ ପରାମର୍ଶ ବା ସେମାନଙ୍କ ସହିତ ମିଶି କୃଷି ଭିତ୍ତିକ ଉତ୍ପାଦନ ବା ଶିଳ୍ପ କାରଖାନା ବସାଇବାରେ ମୁଖ୍ୟ ଭୂମିକା ନେଉଛି । ଯଥା ଇସ୍ରାଇଲି ବିଶେଷଜ୍ଞମାନଙ୍କ ପରାମର୍ଶରେ ଡେରାସ ଫାର୍ମରେ ଉନ୍ନତଜ୍ଞାନ କୌଶଳ ଉପଯୋଗରେ କୃଷି ଓ ଫଳ ଉତ୍ପାଦନ ପ୍ରକଳ୍ପ ହେବାକୁ ଯାଉଛି ।

କୃଷି ଉତ୍ପାଦନ ବୃଦ୍ଧି ନିମନ୍ତେ ସେଚନ, ଯାନ୍ତ୍ରିକ ଚାଷ, ଉତ୍କୃଷ୍ଟ ବିହନ, ଅଧିକ ସାର ଉପଯୋଗ ଏକାନ୍ତ ଲୋଡା । କିନ୍ତୁ ପଞ୍ଜାବରେ ନଦୀ ଜଳ ଯୋଜନା ବିଶେଷ କରି ଚାଷୀମାନଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଶତକଡା ୯୨ ଭାଗ ଓ ହରିଆନାରେ ଶତକଡା ୭୫ ଭାଗ ଚାଷ ଜମି ଜଳସେଚିତ ହୋଇ ଥିବା ସ୍ଥଳେ ଓଡ଼ିଶାରେ ମାତ୍ର ୩୦ ଭାଗ ହୋଇଛି । ଆସନ୍ତା ୫ ବର୍ଷରେ ୫୦ ଭାଗ ଜମିକୁ ଜଳସେଚିତ କରିବାପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଚାଷୀମାନଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟାରେ ନଳକୂପ କରିଆରେ ପାତାଳ ଜଳର ବିନିଯୋଗ ପାଇଁ ଆପିକଲ ଅଧିକଲ ଉତ୍ସାହୀ ଚାଷୀମାନଙ୍କୁ ପ୍ରୋତ୍ସାହନ ରିହାତି ଯୋଗାଉଅଛି । ୧୯୯୬ ମସିହା ଜୁନ ମାସଠାରୁ ୧୯୯୮ ଅଗଷ୍ଟ ପର୍ଯ୍ୟନ୍ତ ଆପିକଲ ନିମ୍ନଲିଖିତ ବିଭିନ୍ନ ଯୋଜନାରେ ସହାୟକ ହୋଇପାରିଅଛି । ଜଳସେଚନ ଜମି ବୃଦ୍ଧି ପାଇଁ ଉଠାଜଳସେଚନ ସୁବିଧା ଚାଷୀମାନଙ୍କୁ ଯୋଗାଇ ଦିଆଯାଇଛି । ୩୧-୩-୧୯୯୮ ସୁଦ୍ଧା ନଳ କୂପ ଯୋଜନାରେ ୪,୯୦୫ କୃଷକଙ୍କୁ ଶତକଡା ୫୦ ଭାଗ ରିହାତି ହାରରେ ୭ କୋଟି ୧୯ ଲକ୍ଷ୮ ୭ ହଜାର ଆଠଶତ ୫୮ ଟଙ୍କା ଯୋଗାଇ ଦିଆଗଲାଣି ଏବଂ କୃଷକମାନେ ନିଜ ଉଦ୍ୟମରେ ଉକ୍ତ ନଳକୂପମାନଙ୍କ

ମାଧ୍ୟମରେ ୩୦ ହଜାର ଏକର ବା ୧୨ ହଜାର ହେକ୍ଟର ଜମି ଜଳସେଚିତ କରି ପାରିଲେଣି । ଏତଦ୍ୱାରା ଧାନ, ପନିପରିବା,କଦଳୀ, ବାଦାମ ପ୍ରଭୃତି ଉତ୍ପାଦନ ବୃଦ୍ଧି ପାଇଛି । ଫଳରେ ୪,୯୦୫ ପମ୍ପ ସ୍ଥଳକ ଓ ଅଧିକ ଫସଲ ଉତ୍ପାଦନରେ ୬ ଲକ୍ଷ କୃଷି ଶ୍ରମିକ ମଜୁରି ପାଇଲେ । ଏଥି ସହିତ ୨,୯୪୩ ଜଣ ଶିକ୍ଷିତ ବେକାରୀଙ୍କୁ ସାମୟିକ କର୍ମନିଯୁକ୍ତି ଦିଆଯାଇ ପାରିଛି । ଉଦାହରଣ ସ୍ୱରୂପ ନିମାପଡ଼ା ବ୍ଲକରେ କେତେକ ଚାଷୀ ଆପିକଲ ରିହାତି ଟଙ୍କାରେ ନଳକୂପ କରି ଜମିରେ ଜଳସେଚିତ କରାଇ ଧାନ ତଥା ପନିପରିବା ଉତ୍ପାଦନ ବୃଦ୍ଧି କରିଛନ୍ତି । ବିଶେଷକରି ଗୋଟିଏ ହରିଜନ ପରିବାର ବ୍ୟାଙ୍କରୁ ସୁନା ବନ୍ଧକରେ ଟ୨୦,୦୦୦.୦୦ ଋଣ କରି ଟ୩୪,୦୦୦.୦୦ ଖର୍ଚ୍ଚରେ ୧୦୦ ଫୁଟ ଗଭୀର ନଳକୂପ ଖୋଳାଇଛି । ସେ ଟ୧୪,୦୦୦.୦୦ ଆପିକଲ ରିହାତି ପାଇଛି ଏବଂ ନିଜର ୪ ଏକର ଜମିରେ ଗତ ବର୍ଷ ଡାଲୁଅ ଧାନ କରି ଆଉ ଅନ୍ୟ ଚାଷୀମାନଙ୍କ ୧୧ ଏକର ଜମିରେ ଧାନ ଚାଷ ପାଇଁ ପାଣି ବିକ୍ରି କରି ଏକର ପିଛା ଟ୧୮୦୦.୦୦ ଟଙ୍କା ହାରରେ ସମୁଦାୟ ଟ୧୯,୮୦୦.୦୦ ଜଳକର ଆଦାୟ କରି ସେହି ବର୍ଷରେ ସମସ୍ତ ବ୍ୟାଙ୍କ ଋଣ ଶୁଝି ଦେଇଛି ।

**ଯାନ୍ତ୍ରିକ ଚାଷ :**

ଦ୍ରୁତ ଯାନ୍ତ୍ରିକ ଚାଷର ପ୍ରବର୍ତ୍ତନ ଉପରେ ଆପିକଲ ଉଦ୍ୟମ କରୁଅଛି । ଶିକ୍ଷିତ ବେକାର ନିଯୁକ୍ତି ସହିତ ୩୦ ଭାଗ ଅଧିକ ଫସଲ ଉତ୍ପାଦନ ହେଉଥିବାରୁ ୩୧-୩-୧୯୯୮ ସୁଦ୍ଧା କୃଷକମାନଙ୍କୁ ୪ ଲକ୍ଷ ୩୦ ହଜାର ଟଙ୍କା ରିହାତି ମୂଲ୍ୟରେ ୮୬ ଗୋଟି ପାୱାର ଟିଲର ଦିଆଗଲାଣି । ଫଳରେ ୮୬ ଜଣ ଶିକ୍ଷିତ ବେକାରଙ୍କୁ କର୍ମ ନିଯୁକ୍ତି ଦିଆ ଯାଇଅଛି । ସେହିପରି ୧୪ ଗୋଟି କୃଷି ସେବାକେନ୍ଦ୍ର ବିଭିନ୍ନ ଜାଗାରେ ଉଦ୍ୟୋଗୀମାନଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇ ବିଭିନ୍ନ ପ୍ରକାର କୃଷି ଯନ୍ତ୍ରପାତିର ଉପଯୋଗ କରାଯିବା ସଙ୍ଗେ ସଙ୍ଗେ ୧୧୮ ଜଣ ଶିକ୍ଷିତ ବେକାଙ୍କୁ କର୍ମ ନିଯୁକ୍ତି ଦିଆଯାଇଅଛି । ଯଥା :-

| କୃଷି ସେବାକେନ୍ଦ୍ର ଉଦ୍ୟୋଗୀଙ୍କ ନାମ | ସ୍ଥାନ | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ |
|---|---|---|---|---|
| ଶ୍ରୀ ଅନଙ୍ଗ ପ୍ରସାଦ ପଟ୍ଟନାୟକ | ବୋଟଣ୍ଡା, ଖୋର୍ଦ୍ଧା | ୯ | ୪ | ୯୦୦ |
| ଶ୍ରୀ ରଙ୍କନାଥ ବିଶୋୟୀ | ବଡକୁଲ, ଖୋର୍ଦ୍ଧା | ୯ | ୪ | ୮୦୦ |
| ଶ୍ରୀମତୀ ରମା ଦେବୀ | ମକୁନ୍ଦପ୍ରସାଦ, ଖୋର୍ଦ୍ଧା | ୯ | ୪ | ୯୦୦ |
| ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର | ମନଗୋବିନ୍ଦପୁର, ଖୋର୍ଦ୍ଧା | ୯ | ୪ | ୯୦୦ |
| ଶ୍ରୀ ସୁକାନ୍ତ କୁମାର ସାହୁ ଏବଂ ଶ୍ରୀ ଦ୍ୱାରିକା ନାଥ ସାହୁ | ଭାକର ସାହି, ଖୋର୍ଦ୍ଧା | ୮ | ୪ | ୮୦୦ |
| ଶ୍ରୀ ରବି ନାରାୟଣ ମହାପାତ୍ର | ଗଉଣ୍ଡା, ହାତବାରଡି, ଖୋର୍ଦ୍ଧା | ୯ | ୪ | ୮୦୦ |
| ଶ୍ରୀ ନୀଳକଣ୍ଠ ରଥ ଏବଂ ଶ୍ରୀ ମାନକେତନ ରଥ | ଗୋଲାବାଇ, ଖୋର୍ଦ୍ଧା | ୯ | ୪ | ୯୦୦ |
| ଶ୍ରୀମତୀ ମନୋରମା ସାମନ୍ତରାୟ | ଦୁର୍ଗାପ୍ରସାଦ, ରାମଚଣ୍ଡି, ଖୋର୍ଦ୍ଧା | ୮ | ୪ | ୮୦୦ |
| ଶ୍ରୀ ବାମଦେବ କର | ରାମଚନ୍ଦ୍ରପୁର, ଭାଟପାଟଣା, ଖୋର୍ଦ୍ଧା | ୮ | ୪ | ୮୦୦ |
| ଶ୍ରୀ ବୈଷ୍ଣବ ଚନ୍ଦ୍ର ଦାଶ | କୋକିଡିହା, ନାଉଗାଁ, ଜଗତ୍‌ସିଂପୁର | ୮ | ୪ | ୮୦୦ |
| ଶ୍ରୀ ମଦନ ମୋହନ ରାଉତ | ଡନରା, ରାହୁଆ, ଜଗତ୍‌ସିଂପୁର | ୮ | ୪ | ୮୦୦ |
| ଶ୍ରୀ ଏନ. ପାତ୍ର | ଟିକାପଡା, ଗଞ୍ଜାମ | ୮ | ୪ | ୮୦୦ |
| ଶ୍ରୀ ଗଜେନ୍ଦ୍ର ଦଳେଇ | ଅଲାଣ୍ଡୋ, ବିରିଡି, ଜଗତ୍‌ସିଂପୁର | ୮ | ୪ | ୮୦୦ |
| ଶ୍ରୀ ବୈତାଳୀ ରାଉତ | ହରିସପୁର, ତାରାପୁର ରଘୁନାଥପୁର, ଜଗତ୍‌ସିଂପୁର | ୮ | ୪ | ୮୦୦ |
| | ମୋଟ | ୧୧୮ | ୫୬ | ୧୧,୬୦୦ |

୩୧-୮-୧୯୯୮ ସୁଦ୍ଧା କୃଷି ସେବାକେନ୍ଦ୍ର ଯୋଜନାରେ ଶତକଡା ୨୦ ଭାଗ ରିହାତି ହାରରେ ୯,୬୫,୬୫୯ ଟଙ୍କା ଉଦ୍ୟୋଗୀମାନଙ୍କୁ ଯୋଗାଇ ଦିଆ ଗଲାଣି ।

## ଖାଦ୍ୟ ସଂରକ୍ଷଣ :

ଖାଦ୍ୟ ସଂରକ୍ଷଣ ତଥା ଚାଷୀଙ୍କୁ ଅଧିକ ମୂଲ୍ୟରେ ଆଳୁ ଇତ୍ୟାଦି ବିଭିନ୍ନ ପରିବା ବିକିବା ପାଇଁ ୫ ଗୋଟି ଶୀତଳ ଭଣ୍ଡାର ନିର୍ମାଣ କାର୍ଯ୍ୟ ସରିଅଛି । ଯଥା :-

| ଶୀତଳ ଭଣ୍ଡାର ନାମ | ସ୍ଥାନ | କ୍ଷମତା (ମେଟ୍ରିକ ଟନ) | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ |
|---|---|---|---|---|---|
| ମହାଲକ୍ଷ୍ମୀ ଶୀତଳ ଭଣ୍ଡାର | ପାତ୍ରପଡା, ଭୁବନେଶ୍ୱର | ୧୨,୦୦୦ | ୬୦ | ୨୪ | ୪୬,୨୫୦ |
| ସୂର୍ଯ୍ୟ ଶୀତଳ ଭଣ୍ଡାର | କୁରୁଡା, ବାଲେଶ୍ୱର | ୪,୦୦୦ | ୨୬ | ୧୨ | ୧୫,୪୦୦ |
| ମହାବୀର ଶୀତଳ ଭଣ୍ଡାର | ଆଇଗିନିଆ, ଭୁବନେଶ୍ୱର | ୧୦,୦୦୦ | ୪୨ | ୧୭ | ୨୪,୫୦୦ |
| ଶାରଦା ଶୀତଳ ଭଣ୍ଡାର | ନିଶ୍ଚିନ୍ତ କୋଇଲି, କଟକ | ୪,୦୦୦ | ୩୨ | ୧୩ | ୧୨,୫୦୦ |
| ଆଲାଇଡ କୋଲ୍ଡ ଷ୍ଟୋରେଜ | କରଞ୍ଜିଆ, ମୟୂରଭଞ୍ଜ | ୪,୦୦୦ | ୨୧ | ୮ | ୧୨,୧୦୦ |
| | | ମୋଟ | ୧୮୧ | ୭୪ | ୧,୧୦,୭୫୦ |

ବିଗତ ବର୍ଷରେ ଉକ୍ତ ଶୀତଳ ଭଣ୍ଡାରରେ ସଂରକ୍ଷିତ କରାଯାଇ ଆଳୁର ଦରଦାମକୁ ନିୟନ୍ତ୍ରିତ କରାଯାଉଛି, ତତ୍ ସହିତ ୧୮୧ ଜଣଙ୍କୁ କର୍ମ ନିଯୁକ୍ତି ଯୋଗାଇ ଦିଆଯାଇ ପାରିଛି । ଉକ୍ତ ଯୋଜନାରେ ଉଦ୍ୟୋଗୀମାନଙ୍କୁ ଶତକଡା ୨୦ ଭାଗ ରିହାତି ହାରରେ ୮୦ ଲକ୍ଷ ଟଙ୍କା ଯୋଗାଇ ଦିଆଯାଉଛି ।

## ଖାଦ୍ୟ ପ୍ରକ୍ରିୟାକରଣ :

ସେହିପରି ବଳକା ଫଳ ଓ ପନିପରିବାର ଉପଯୋଗରେ ଓଡିଶାର ବିଭିନ୍ନ ସ୍ଥାନରେ ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପମାନ ପ୍ରତିଷ୍ଠା କରାଯାଇଅଛି । ଯଥା -

| ଉଦ୍ୟୋଗର ନାମ | ସ୍ଥାନ | ଉତ୍ପାଦିତ ସାମଗ୍ରୀ | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ |
|---|---|---|---|---|---|
| ସ୍ୱସ୍ତିକ ଆଗ୍ରୋ ଇଣ୍ଡିଆ ପ୍ରା ଲିଃ | ଭୁବନେଶ୍ୱର | ମୃଦୁପାନୀୟ | ୧୨୩ | ୫୦ | ୩୩,୫୦୦ |
| ଓଡିଶି ପିକିଲସ୍ | କେଓଁଝର | ଜାମ୍ ଓ ଆଚାର | ୬୮ | ୨୭ | ୮,୫୦୦ |
| ବରଗଡ କନ୍‌ଫେକ୍‌ସନାରି | ବରଗଡ | ପାଉଁରୁଟି | ୩୯ | ୧୬ | ୧,୬୫୦ |
| ତାରିଣି କାଟେଲ୍ ଫିଡ୍ | ପାନପୋଷ | ଗୋ ଖାଦ୍ୟ | ୩୦ | ୧୨ | ୩୨,୦୦୦ |
| ନିଖିଲ ଫିଡ୍ ଇଣ୍ଡଷ୍ଟ୍ରି | ଅତାବିରା, ବରଗଡ | କୁକୁଡା ଖାଦ୍ୟ | ୧୫ | ୬ | ୨,୬୦୦ |
| | | ମୋଟ | ୨୭୫ | ୧୧୧ | ୭୮,୨୫୦ |

ଉକ୍ତ ଯୋଜନାରେ ଉଦ୍ୟୋଗୀମାନଙ୍କୁ ଶତକଡା ୨୦ ଭାଗ ରିହାତି ହାରରେ ୫୪,୨୭,୬୬୮ ଟଙ୍କା ଯୋଗାଇ ଦିଆ ଗଲାଣି ।

## କୃଷି ଓ ପଶୁପାଳନ ପ୍ରକଳ୍ପ :

ସେହିଭଳି ଓଡିଶାର ବିଭିନ୍ନ ସ୍ଥାନରେ ଫଳଚାଷ, କଫିଚାଷ, ପଶୁପାଳନ, ମତ୍ସ୍ୟଚାଷ, କୁକୁଡା ଫାର୍ମ ଏବଂ ଆଧୁନିକ ପ୍ରଣାଳୀର ମିଶ୍ରିତ ଚାଷ ଇତ୍ୟାଦି ଆର୍ଥିକ ପ୍ରୋତ୍ସାହନରେ ନିର୍ମାଣ କରାଯାଇଅଛି । ସେଗୁଡିକ ହେଲା :-

**ଫଳ, କଫି ଚାଷ ଏବଂ ମିଶ୍ରିତ ଚାଷ :**

| ଉଦ୍ୟୋଗର ନାମ | ସ୍ଥାନ | ଉତ୍ପାଦିତ ସାମଗ୍ରୀ | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ |
|---|---|---|---|---|---|
| ମିଶ୍ର ବାନାନା ଫାର୍ମ | ବିନିକା, ସୋନପୁର | ଫଳଚାଷ | ୧୪ | ୬ | ୯୦୦ |
| ଶ୍ରୀ ରବୀନ୍ଦ୍ର କୁମାର ହୋତା | ଭଣ୍ଡାର, ସୋନପୁର | ଫଳଚାଷ | ୮ | ୪ | ୫୦୦ |
| ଆଗ୍ରୋ ବିଜ୍ଞର ପ୍ରା ଲିଃ | ନୂଆପୁଟ, କୋରାପୁଟ | ମିଶ୍ରିତଚାଷ | ୧୮ | ୮ | ୧,୮୦୦ |
| ଶ୍ରୀ ପିତାମ୍ବର ଜେନା | କୁନା, କେନ୍ଦ୍ରାପଡା | ଫଳଚାଷ | ୧୫ | ୬ | ୧,୧୦୦ |
| ଶ୍ରୀ ଲଲାଟେନ୍ଦୁ ମିଶ୍ର | ଦରିକୁମ୍ପା, ଫୁଲବାଣୀ | ଫଳଚାଷ | ୧୭ | ୭ | ୧,୩୦୦ |
| ଶ୍ରୀ ଏନ. କୋଟେଶ୍ୱର ରାଓ | ବନ୍ଧଗାଁ, କୋରାପୁଟ | ଫଳଚାଷ | ୧୮ | ୮ | ୨,୩୦୦ |
| ମିନାକ୍ଷୀ ପ୍ଲାଣ୍ଟେସନ ପ୍ରା ଲିଃ | ଫୁଲବାଣୀ | କଫି | ୨୩ | ୧୨ | ୯,୦୦୦ |
| | | ମୋଟ | ୧୧୩ | ୫୧ | ୧୬,୯୦୦ |

ଉକ୍ତ ଯୋଜନାରେ ଆଜି ପର୍ଯ୍ୟନ୍ତ ଉଦ୍ୟୋଗୀ ଚାଷୀମାନଙ୍କୁ ଶତକଡା ୨୦ ହାରରେ ୧,୬୨,୦୯୯.୦୦ ଟଙ୍କା ରିହାତି ଦିଆଗଲାଣି ।

**କୁକୁଟ ପାଳନ :**

| ଉଦ୍ୟୋଗର ନାମ | ସ୍ଥାନ | ଉତ୍ପାଦିତ ସାମଗ୍ରୀ | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ଶ୍ରମ ଦିବସ |
|---|---|---|---|---|---|
| ଶ୍ରଦ୍ଧା ଫୁଡ୍ ଆଣ୍ଡ ପ୍ରୋଭିନ୍ସ ପ୍ରା ଲି. | ମଳିପଡା, ଖୋର୍ଦ୍ଧା | କୁକୁଡା ଅଣ୍ଡା | ୩୦ | ୧୨ | ୩୨,୦୦୦ |
| ସମଲେଶ୍ୱରୀ ପୋଲଟ୍ରୀ | ଅତାବିରା, ବରଗଡ | କୁକୁଡା ଅଣ୍ଡା | ୨୩ | ୯ | ୧୪,୫୦୦ |
| ଚଉଧୁରି ଫୁଡସ୍ | ଅତାବିରା, ବରଗଡ | କୁକୁଡା ଅଣ୍ଡା | ୨୩ | ୯ | ୧୪,୫୦୦ |
| ମେର୍ ପୋଲଟ୍ରି | ବଲାଙ୍ଗିର | କୁକୁଡା ଅଣ୍ଡା ଏବଂ ଖାଦ୍ୟ | ୧୨ | ୫ | ୧୦,୮୦୦ |
| ଶ୍ରୀ ପ୍ରଶାନ୍ତ କୁମାର ବେହେରା | ଲକ୍ଷ୍ମୀନାରାୟଣପୁର, ଖୋର୍ଦ୍ଧା | କୁକୁଡା ମାଂସ | ୮ | ୪ | ୧,୩୦୦ |
| | | ମୋଟ | ୯୬ | ୩୯ | ୭୩,୧୦୦ |

୩୧-୮-୧୯୯୮ ସୁଦ୍ଧା ଉକ୍ତ ଯୋଜନାରେ ଉଦ୍ୟୋଗୀମାନଙ୍କୁ ୩୫,୮୪,୫୯୪.୦୦ ଟଙ୍କା ରିହାତି ଆକାରରେ ଦିଆଯାଇଛି ।

**ପଶୁପାଳନ :**

| ଉଦ୍ୟୋଗର ନାମ | ସ୍ଥାନ | ଉତ୍ପାଦିତ ସାମଗ୍ରୀ | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ |
|---|---|---|---|---|---|
| ଲିଓ ଆଗ୍ରୋ ପ୍ରକଳ୍ପ | କୋଚିଲା, କଟକ | ଗାଈ ପାଳନ | ୮ | ୪ | ୮୦୦ |
| ଶ୍ରୀମତୀ ଆଶାରାଣି ଝା | ପ୍ରଧାନପଲ୍ଲୀ, ବରଗଡ | ଗାଈ ପାଳନ | ୫ | ୩ | ୨୫୦ |
| | | ମୋଟ | ୧୩ | ୭ | ୧,୦୫୦ |

ଉକ୍ତ ଯୋଜନାରେ ୩୧-୮-୧୯୯୮ ପର୍ଯ୍ୟନ୍ତ ୮୦,୬୮୭.୦୦ ଟଙ୍କା ରିହାତି ଦିଆଯାଇଛି ।

ମତ୍ସ୍ୟ ଚାଷ :

| ଉଦ୍ୟୋଗର ନାମ | ସ୍ଥାନ | ଉତ୍ପାଦିତ ସାମଗ୍ରୀ | କର୍ମ ନିଯୁକ୍ତି | ସାମୟିକ କର୍ମ ନିଯୁକ୍ତି | ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ |
|---|---|---|---|---|---|
| ପ୍ରମୋଦ ସାହୁ | ସାକୁଆ, ବରସାହି, ମୟୂରଭଞ୍ଜ | ମଧୁର ମାଛ | ୮ | ୪ | ୫୦୦ |

ଏଥିରେ ୪୦,୦୬୦.୦୦ ଟଙ୍କା ରିହାତି ଦିଆଯାଇଅଛି ।

ଏହିଭଳି ଓଡିଶାର ବିଭିନ୍ନ ଯାଗାରେ ଶୀତଳ ଭଣ୍ଡାର, ପଶୁପାଳନ, ମତ୍ସ୍ୟଚାଷ, କୁକୁଡା ଫାର୍ମ, ଆଧୁନିକ ପ୍ରଣାଳୀରେ ମିଶ୍ରିତ ଚାଷ ଇତ୍ୟାଦି ୨୮ଟି କାର୍ଯ୍ୟକ୍ରମ, ଆପିକଲ ପ୍ରୋତ୍ସାହନରେ ନିର୍ମାଣ ଚାଲିଛି । ଏତଦ୍‌ବ୍ୟତୀତ ବିଭିନ୍ନ ଗବେଷଣା ସଂସ୍ଥା (CFTRI, DFRL, ITCOT ଓ NCJD) ପ୍ରଭୃତିମାନଙ୍କରୁ ୨୨୦ଟି ପ୍ରକଳ୍ପ ସମ୍ବନ୍ଧୀୟ ବିବରଣୀ ସଂଗ୍ରହ କରାଯାଇ ସମସ୍ତ କୃଷି ସହାୟକ କେନ୍ଦ୍ରମାନଙ୍କୁ ଯୋଗାଇ ଦିଆଯାଇଅଛି ।

କୃଷିକ୍ଷେତ୍ରରେ ସଚେତନା ସୃଷ୍ଟିପାଇଁ ଆପିକଲ ତରଫରୁ ଏପର୍ଯ୍ୟନ୍ତ ୨୪ ଗୋଟି ତାଲିମ ଶିବିର, କର୍ମଶାଳା ଓ ଆଲୋଚନା ଚକ୍ର ଓଡିଶାର ବିଭିନ୍ନ ସ୍ଥାନରେ ଆୟୋଜନ କରାଯାଇଅଛି ।

ବର୍ତ୍ତମାନ ଫୁଲ ଚାଷ ଏକ ଲାଭଜନକ ବ୍ୟବସାୟ ହୋଇଥିବାରୁ ଉଦ୍ୟୋଗୀମାନଙ୍କୁ ଆପିକଲ ତରଫରୁ ପ୍ରୋତ୍ସାହନ ଦିଆଯାଉଅଛି । ଓଡିଶାର ବହୁ ମାଳ ଅଞ୍ଚଳରେ ବିଭିନ୍ନ ଫଳ ତଥା ଆମ୍ବ, ଲେମ୍ବୁ, କିତୁ, ବରକୋଳି ସପେଟା ଇତ୍ୟାଦି ଚାଷପାଇଁ ଆପିକଲ ପ୍ରୋତ୍ସାହନ ଦେଉଅଛି ଓ ଉଦ୍ୟୋଗୀମାନଙ୍କୁ ରିହାତି ଦିଆଯାଉଅଛି । ଆପିକଲ ତରଫରୁ ୧୬ ଗୋଟି ଫଳ ଚାଷ, ଫୁଲ ଚାଷ, ପଶୁପାଳନ, କୁକୁଡା ଚାଷ ଏବଂ ରେଶମ ଚାଷ ସମ୍ବନ୍ଧରେ ପ୍ରକଳ୍ପ ରିପୋର୍ଟମାନ ତିଆରି କରାଯାଇ ଉତ୍ସାହୀ ଉଦ୍ୟୋଗୀମାନଙ୍କୁ ବିକ୍ରି କରାଯାଉଅଛି ।

ଝୋଟରୁ ବିଭିନ୍ନ ସାମଗ୍ରୀର ଉତ୍ପାଦନ ନିମନ୍ତେ, ବୈଷୟିକ ଜ୍ଞାନ ଯୋଗାଇବା ପାଇଁ ଭାରତ ସରକାରଙ୍କର 'ଜାତୀୟ ଝୋଟ ସାମଗ୍ରୀ ବୋର୍ଡ'ର ଏକ ସେବାକେନ୍ଦ୍ର ଆପିକଲ ସହାୟତାରେ ଭୁବନେଶ୍ୱରଠାରେ ଖୋଲାଯାଇଅଛି ।

ଉପର ଲିଖିତ ବିଭିନ୍ନ ଯୋଜନାରେ ୩୧-୮-୧୯୯୮ ପର୍ଯ୍ୟନ୍ତ ପ୍ରଦାନ କରାଯାଇଥିବା ସର୍ବମୋଟ ସହାୟତା ଓ କର୍ମନିଯୁକ୍ତି ତଥା ପ୍ରକଳ୍ପ ନିର୍ମାଣରେ ନିଯୁକ୍ତି ଦିନ ମଜୁରିଆଙ୍କର ଏକ ହିସାବ ନିମ୍ନରେ ପ୍ରଦାନ କରାଗଲା :-

(୧) ରିହାତି ... ୯,୦୬,୭୦,୬୨୪.୦୦ ଟଙ୍କା

(୨) କର୍ମନିଯୁକ୍ତି .. ୫,୭୯୨

(୩) ସାମୟିକ କର୍ମନିଯୁକ୍ତି ... ୩,୨୮୪

(୪) ପ୍ରକଳ୍ପ ନିର୍ମାଣରେ ନିଯୁକ୍ତ ଦିନ ମଜୁରିଆ ... ୮,୯୧,୬୫୦

ଓଡିଶା କୃଷି ତଥା ଶିଳ୍ପ ଉଦ୍ୟୋଗୀମାନେ ଆପିକଲ ସାହାଯ୍ୟରେ ବିଭିନ୍ନ ପ୍ରକଳ୍ପ କରି ପାରିଲେ ଅଧିକ ଫସଲ ଉତ୍ପାଦନ ସହିତ କର୍ମନିଯୁକ୍ତି ଅବସର ବୃଦ୍ଧି ପାଇବ । କୃଷକମାନଙ୍କୁ ଅବହିତ କରିବା ପାଇଁ ବିଭିନ୍ନ ପ୍ରଦର୍ଶନୀ ଫାର୍ମ, ଉଦ୍ୟୋଗୀ ତାଲିମ କେନ୍ଦ୍ର, ଗବେଷଣାଗାର ବିଶିଷ୍ଟ ଏକ ଆପିକଲ ଭବନ ଭୁବନେଶ୍ୱରଠାରେ ନିର୍ମାଣ କରିବା ପାଇଁ ଯୋଜନା ପ୍ରସ୍ତୁତି ଚାଲିଛି । ଉଦ୍ୟୋଗୀମାନଙ୍କୁ ଆପିକଲ ସମସ୍ତ ଜ୍ଞାନ କୌଶଳ ଯୋଗାଇବାକୁ ପ୍ରସ୍ତୁତ ଅଛି । ଏଣୁ ଉଦ୍ୟୋଗୀମାନେ ଆପିକଲ ଠିକଣାରେ ଯୋଗାଯୋଗ କରିବାକୁ ଅନୁରୋଧ ।

ଅଧ୍ୟକ୍ଷ, ଆପିକଲ
୧୨୬୬, ୟୁନିଟ-୯
ଭୁବନେଶ୍ୱର-୭୫୧୦୦୭

# ଓଡ଼ିଶା ମନ୍ତ୍ରିମଣ୍ଡଳର ବିଭାଗ ପୁନର୍ବିନ୍ୟାସ

## ମୁଖ୍ୟମନ୍ତ୍ରୀ

**ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ**
ସାଧାରଣ ପ୍ରଶାସନ, ସ୍ୱରାଷ୍ଟ୍ର, ଅର୍ଥ, ଶକ୍ତି, ଇସ୍ପାତ୍ ଓ ଖଣି, କୃଷି, ସମବାୟ, ମହିଳା ଓ ଶିଶୁ ବିକାଶ, ଗୃହ ନିର୍ମାଣ

## ଉପ ମୁଖ୍ୟମନ୍ତ୍ରୀ

**ଶ୍ରୀ ବସନ୍ତ କୁମାର ବିଶ୍ୱାଳ**
ଜଳ ସମ୍ପଦ, ସଂସଦୀୟ ବ୍ୟାପାର, ଯୋଜନା ଓ ସମନ୍ୱୟ

**ଶ୍ରୀ କାହ୍ନୁଚରଣ ଲେଙ୍କା**
ପରିବହନ

**ଶ୍ରୀ ରାମଚନ୍ଦ୍ର ଉଲାକା**
କଲ୍ୟାଣ

**ଶ୍ରୀ ଜଗନ୍ନାଥ ପଟ୍ଟନାୟକ**
ରାଜସ୍ୱ

**ଶ୍ରୀ ନିରଞ୍ଜନ ପଟ୍ଟନାୟକ**
ଶିଳ୍ପ, ବୟନ ଶିଳ୍ପ ଓ ହସ୍ତତନ୍ତ, ହସ୍ତଶିଳ୍ପ ଓ କୁଟୀର ଶିଳ୍ପ

**ଶ୍ରୀ ପ୍ରସନ୍ନ କୁମାର ଦାଶ**
ପରିବେଶ, ବିଜ୍ଞାନ ଓ ବୈଷୟିକ ବିଦ୍ୟା

**ଶ୍ରୀ ଭାଗବତ ପ୍ରସାଦ ମହାନ୍ତି**
ଉଚ୍ଚ ଶିକ୍ଷା, ସାଧାରଣ ଅଭିଯୋଗ ଓ ପେନ୍‌ସନ୍

**ଶ୍ରୀ ଭୂପିନ୍ଦର ସିଂ**
ସୂଚନା ଓ ଲୋକ ସମ୍ପର୍କ

**ସେକ୍ ମତଲୁବ ଅଲି**
ଗ୍ରାମ୍ୟ ଉନ୍ନୟନ

**ଶ୍ରୀ ରଘୁନାଥ ପଟ୍ଟନାୟକ**
ଆଇନ

**ହବିବୁଲ୍ଲା ଖାଁ**
ପଞ୍ଚାୟତିରାଜ

**ଶ୍ରୀ ହରିହର ସ୍ୱାଇଁ**
ପୂର୍ତ୍ତ

**ଶ୍ରୀ କିଶୋର ଚନ୍ଦ୍ର ପଟେଲ**
ଜଙ୍ଗଲ ଓ ସାଧାରଣ ଉଦ୍ୟୋଗ

**ଶ୍ରୀ ଦୁର୍ଗାଚରଣ ପଟ୍ଟନାୟକ**
ଶ୍ରମ ଓ ନିଯୁକ୍ତି

## ରାଷ୍ଟ୍ରମନ୍ତ୍ରୀ (ସ୍ୱାଧୀନ ଦାୟିତ୍ୱ)

**ଶ୍ରୀ ଅମରନାଥ ପ୍ରଧାନ**
ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ

**ଶ୍ରୀ ଜଗନ୍ନାଥ ରାଉତ**
ନଗର ଉନ୍ନୟନ

**ଶ୍ରୀ ନେଣାନନ୍ଦ ମଲ୍ଲିକ**
ସଂସ୍କୃତି ଓ ପର୍ଯ୍ୟଟନ

**ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା**
ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ

**ଶ୍ରୀ ସୁରେଶ ଚନ୍ଦ୍ର ରାଉତରାୟ**
ଅବକାରୀ

**ଶ୍ରୀ ନାଗାର୍ଜ୍ଜୁନ ପ୍ରଧାନ**
ବାଣିଜ୍ୟ

**ଶ୍ରୀ ଜୟଦେବ ଜେନା**
ସ୍କୁଲ ଓ ଗଣଶିକ୍ଷା

**ଶ୍ରୀ ଗଙ୍ଗାଧର ମାଝୀ**
କ୍ରୀଡ଼ା ଓ ଯୁବ କଲ୍ୟାଣ

**ଶ୍ରୀ ମୋହନ ନାଗ**
ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ

## ରାଷ୍ଟ୍ରମନ୍ତ୍ରୀ

**ଶ୍ରୀ ନବୀନ ଚନ୍ଦ୍ର ନାରାୟଣ ଦାସ**
ପଞ୍ଚାୟତିରାଜ

**ଶ୍ରୀ ବିଜୟଲକ୍ଷ୍ମୀ ସାହୁ**
ମହିଳା ଓ ଶିଶୁ କଲ୍ୟାଣ

**ଶ୍ରୀ ରବୀନ୍ଦ୍ର କୁମାର ସେଠୀ**
ସମବାୟ

**ଶ୍ରୀ ରମାକାନ୍ତ ମିଶ୍ର**
କୃଷି

**ଶ୍ରୀ ହଳଧର କାର୍ଜି**
ଇସ୍ପାତ୍ ଓ ଖଣି

# ଓଡ଼ିଶାରେ ଶିଶୁ ଶ୍ରମିକ ସମସ୍ୟା

ତୁଳିକା ପଟ୍ଟନାୟକ

ଶିଶୁ ଶ୍ରମିକ ପ୍ରଥା ଆମ ରାଜ୍ୟ ତଥା ବିଶ୍ୱର ଏକ ପ୍ରଧାନ ସମସ୍ୟା । ଜାତିସଂଘର ଶିଶୁ କଲ୍ୟାଣ ପାଣ୍ଠି (ୟୁନିସେଫ୍) ତରଫରୁ ପ୍ରକାଶିତ 'ବିଶ୍ୱର ଶିଶୁମାନଙ୍କର ସ୍ଥିତି' ରିପୋର୍ଟ ଉଲ୍ଲେଖ କରିଛି ଯେ, "ଶିଶୁ ଶ୍ରମିକ ସମସ୍ୟା ଶିଶୁମାନଙ୍କର ଉନ୍ନତି ପଥରେ ଏକ ବିରାଟ ପ୍ରତିବନ୍ଧକ" ।

## ଶିଶୁ ଶ୍ରମିକ କିଏ ?

ଯେଉଁ ସ୍ୱଳ୍ପବୟସ୍କ ବାଳକବାଳିକାମାନେ ବିଭିନ୍ନ କର୍ମରେ ନିଯୁକ୍ତି ହେବାଦ୍ୱାରା ଶିକ୍ଷାଲାଭ ତଥା ଏକ ସୁସ୍ଥ, ସୁରକ୍ଷିତ, ମୁକ୍ତ ଜୀବନ ଯାପନର ଅଧିକାରରୁ ବଞ୍ଚିତ ହୁଅନ୍ତି, ସେହିମାନେ ଶିଶୁ ଶ୍ରମିକ । ଏହି ବାଳଶ୍ରମ ପ୍ରଥା ଯୋଗୁଁ ଶିଶୁ ଶାରୀରିକ, ମାନସିକ, ଅର୍ଥନୈତିକ, ସାମାଜିକ ଓ ନୈତିକ ସ୍ତରରେ ଶୋଷଣର ଶିକାର ହୋଇଥାଏ । ସାଧାରଣତଃ ୫ ବର୍ଷରୁ ୧୪ ବର୍ଷ ବୟସର ପିଲାମାନଙ୍କୁ ଏହି ଶ୍ରମିକ ବର୍ଗରେ ଅନ୍ତର୍ଭୁକ୍ତ କରାଯାଇଥାଏ । କେତେକ ବିଶେଷଜ୍ଞଙ୍କ ମତରେ ଯେଉଁ ଶିଶୁ ବିଦ୍ୟାଳୟରେ ଶିକ୍ଷାଲାଭ କରିପାରେନି ସେ ଶିଶୁ ଶ୍ରମିକ । ବିଦ୍ୟାଳୟରେ ଶିଶୁର ଅନୁପସ୍ଥିତିର କାରଣ ଗୃହର ଆର୍ଥିକ ଅସ୍ୱଚ୍ଛଳତା ହୋଇପାରେ ବା ପାରିବାରିକ କାର୍ଯ୍ୟଭାରର ବାଧ୍ୟବାଧକତା ହୋଇପାରେ । କନିଷ୍ଠ ଭାଇଭଉଣୀଙ୍କ ଯତ୍ନ ନେବା ଓ ନାନା ଗୃହ କର୍ମରେ ବ୍ୟସ୍ତ ରହି ଯଦି ଶିଶୁଟିଏ ବିଦ୍ୟାଳୟ ଯିବାରୁ ବଞ୍ଚିତ ହୁଏ, ତେବେ ୟୁନିସେଫ୍ ତାହାକୁ ଶିଶୁ ଶ୍ରମ କହେ । ସ୍ୱଳ୍ପ ପାରିଶ୍ରମିକ ବା ବିନା ପାରିଶ୍ରମିକରେ ଶିଶୁ ଶ୍ରମିକମାନେ ଗୃହ ଭିନ୍ନ ବାହ୍ୟ ବାତାବରଣରେ ମଧ୍ୟ କାର୍ଯ୍ୟ କରନ୍ତି ।

## ଆନ୍ତର୍ଜାତୀୟ ଓ ଜାତୀୟ ଦୃଶ୍ୟପଟ୍ଟ

ଆନ୍ତର୍ଜାତୀୟ ଶ୍ରମ ସଂସ୍ଥାର ପରିସଂଖ୍ୟାନ ଅନୁଯାୟୀ ବିଶ୍ୱରେ ୨୫ ନିୟୁତ ଶିଶୁ ଶ୍ରମିକ ରହିଛନ୍ତି । ଆଫ୍ରିକା ଓ ଏସିଆ ଶିଶୁ ଶ୍ରମିକ-ବହୁଳ ମହାଦେଶ । କିନ୍ତୁ ଏହି ସମସ୍ୟାର କୁଟିଳ ବଳୟ ମଧ୍ୟରେ ରହିଛନ୍ତି ଦକ୍ଷିଣ ଆମେରିକା, ୟୁରୋପ ମହାଦେଶ ଓ ବିକଶିତ ଦେଶ ଯୁକ୍ତରାଷ୍ଟ୍ର ଆମେରିକା ପୁଣି କ୍ରମବର୍ଦ୍ଧିଷ୍ଣୁ ଶିଶୁ ଶ୍ରମିକ ହାର ବାସ୍ତବିକ ଉଦ୍‌ବେଗଜନକ ।

ପୃଥିବୀର ଏକ ତୃତୀୟାଂଶ ଶିଶୁ ଶ୍ରମିକ ଏସୀୟନିବାସୀ । ବିଶ୍ୱ ଶ୍ରମ ସଂସ୍ଥା ଅନୁସାରେ ପୃଥିବୀର ସର୍ବାଧିକ ସଂଖ୍ୟକ ଶିଶୁ ଶ୍ରମିକ ଭାରତରେ ରହିଛନ୍ତି । ପ୍ରତି ୪ ଜଣ ବିଶ୍ୱ ଶିଶୁ ଶ୍ରମିକ ମଧ୍ୟରୁ ଜଣେ ଭାରତୀୟ । ଆମ ଜାତୀୟ ଶ୍ରମ ଶକ୍ତିର ଶତକଡ଼ା ୮ ଭାଗ ହେଉଛନ୍ତି ଏହି ବାଳ ଶ୍ରମିକ ଓ ଜାତୀୟ ଆୟ (Gross National Product)ରେ ଶତକଡ଼ା ୨୦ ଭାଗ ହେଉଛି ଏମାନଙ୍କର ଯୋଗଦାନ । ୧୯୯୧ରେ ଭାରତରେ ୧୧·୨୮ ନିୟୁତ ବାଳ ଶ୍ରମିକ ରହିଥିଲେ । ବର୍ତ୍ତମାନ ଏହି ସଂଖ୍ୟା ପ୍ରାୟ ୧୮ ନିୟୁତ । ନିମ୍ନ ସାରଣୀରେ ଭାରତର ବିଭିନ୍ନ ରାଜ୍ୟର ଶିଶୁ ଶ୍ରମିକ ସଂଖ୍ୟା ମୋଟ ଶିଶୁ ଶ୍ରମିକ ସଂଖ୍ୟାର ଶତକଡ଼ାଭାଗ ରୂପେ ପ୍ରଦତ୍ତ ହୋଇଛି ।

(୧୯୯୧ ଜନଗଣନା ରିପୋର୍ଟ ଭିତ୍ତିରେ)

**ସାରଣୀ–୧**

| ରାଜ୍ୟର ନାମ | ଶିଶୁ ଶ୍ରମିକ ସଂଖ୍ୟା (ମୋଟ ସଂଖ୍ୟାର% ରୂପେ) |
|---|---|
| (୧) ମଧ୍ୟ ପ୍ରଦେଶ | ୧୨·୪୫ |
| (୨) ମହାରାଷ୍ଟ୍ର | ୧୧·୪୨ |
| (୩) କର୍ଣ୍ଣାଟକ | ୮·୩୦ |
| (୪) ଗୁଜୁରାଟ | ୮·୫୨ |
| (୫) ଓଡ଼ିଶା | ୫·୧୫ |
| (୬) ବିହାର | ୮·୦୨ |
| (୭) ଆନ୍ଧ୍ରପ୍ରଦେଶ | ୧୪·୩୦ |
| (୮) ଉତ୍ତରପ୍ରଦେଶ | ୧୦·୫୨ |
| (୯) ପଶ୍ଚିମବଙ୍ଗ | ୪·୪୪ |
| (୧୦) ତାମିଲନାଡୁ | ୭·୧୫ |
| (୧୧) ରାଜସ୍ଥାନ | ୫·୦୧ |
| (୧୨) ଅନ୍ୟାନ୍ୟ | ୩·୬୭ |
| (ସମୁଦାୟ) ଭାରତ | ୧୦୦·୦୦ |

ଏହି ପରିସଂଖ୍ୟାନର ବିଶ୍ଳେଷଣରୁ ଜଣାଯାଏ ଯେ, ମାତ୍ର ୧୧ଟି ରାଜ୍ୟରେ ଭାରତର ୬୦ ପ୍ରତିଶତରୁ ଊର୍ଦ୍ଧ୍ୱ ଶିଶୁ ଶ୍ରମିକ ଅଛନ୍ତି । ଆନ୍ଧ୍ରପ୍ରଦେଶ ଭାରତବର୍ଷର ସର୍ବାଧିକ ବାଳ ଶ୍ରମିକ ବହୁଳ ରାଜ୍ୟ । ମଧ୍ୟପ୍ରଦେଶ, ମହାରାଷ୍ଟ୍ର, ଉତ୍ତର ପ୍ରଦେଶ, ରାଜସ୍ଥାନ, ବିହାର, ଗୁଜୁରାଟ, କର୍ଣ୍ଣାଟକ, ତାମିଲନାଡୁ ରାଜ୍ୟମାନଙ୍କରେ ଓଡ଼ିଶା ଅପେକ୍ଷା ଅଧିକ ସଂଖ୍ୟକ ଶିଶୁ ଶ୍ରମିକ ରହିଛନ୍ତି । କିନ୍ତୁ ଆସାମ, ମେଘାଳୟ, ମଣିପୁର, ପଶ୍ଚିମବଙ୍ଗ, ହିମାଚଳ ପ୍ରଦେଶ, କେରଳ ପରି ରାଜ୍ୟରେ ଏହି ସମସ୍ୟାର ବହୁଳତା ଓଡ଼ିଶାଠାରୁ ଅପେକ୍ଷାକୃତ କମ୍ ।

## ଓଡ଼ିଶାରେ ଶିଶୁ ଶ୍ରମିକ

୧୯୯୬ ମସିହା ଡିସେମ୍ବର ୧୦ ତାରିଖର ଉଚ୍ଚତମ ନ୍ୟାୟାଳୟର ନିର୍ଦ୍ଦେଶନାମାନୁଯାୟୀ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ

ଶିଶୁ ଶ୍ରମିକ ପୁନଃ ସର୍ଭେ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । ଏକ ସର୍ବେକ୍ଷଣ ତଥ୍ୟାନୁସାରେ ଓଡ଼ିଶାରେ ୮ ଲକ୍ଷ ୩୧ ହଜାର ୭ ଶହ ୬୪ ଜଣ ଶିଶୁ ଶ୍ରମିକ ଅଛନ୍ତି । ସାରଣୀ–୨ର ପ୍ରଥମ ସ୍ତମ୍ଭରେ ଓଡ଼ିଶାର ୩୦ଟି ଜିଲ୍ଲାର ନାମ, ଦ୍ୱିତୀୟ ସ୍ତମ୍ଭରେ ଚିହ୍ନଟ ହୋଇଥିଲା ଶିଶୁ ଶ୍ରମିକମାନଙ୍କ ସଂଖ୍ୟା । ତୃତୀୟସ୍ତମ୍ଭରେ ଜିଲ୍ଲାର ଶିଶୁ ଶ୍ରମିକ ସଂଖ୍ୟାକୁ ରାଜ୍ୟର ମୋଟ ଶିଶୁ ଶ୍ରମିକ ସଂଖ୍ୟାର ଶତକଡ଼ା ଭାଗ ରୂପେ ଉଲ୍ଲେଖ କରାଗଲା । ଏଥିରେ ଜିଲ୍ଲାମାନଙ୍କର ସଜ୍ଜିକରଣ ଶିଶୁ ଶ୍ରମିକ ସଂଖ୍ୟା ଅନୁସାରେ କରାଯାଇଛି ।

## ସାରଣୀ–୨

| ଜିଲ୍ଲାର ନାମ | ଚିହ୍ନଟ ଶିଶୁ ଶ୍ରମିକ ସଂଖ୍ୟା | ରାଜ୍ୟ ଶିଶୁ ଶ୍ରମିକ ସଂଖ୍ୟାର ପ୍ରତିଶତ |
|---|---|---|
| (୧) ଗଞ୍ଜାମ | ୭୫,୮୮୭ | ୯·୧୨ |
| (୨) ମୟୂରଭଞ୍ଜ | ୫୫,୪୭୭ | ୬·୬୬ |
| (୩) ସୁନ୍ଦରଗଡ଼ | ୪୭,୦୭୫ | ୫·୬୬ |
| (୪) କଟକ | ୪୦,୯୮ | ୪·୯୩ |
| (୫) ବରଗଡ଼ | ୩୭,୪୭୫ | ୪·୬୦ |
| (୬) କେନ୍ଦୁଝର | ୩୬,୩୧୭ | ୪·୩୭ |
| (୭) କୋରାପୁଟ | ୩୫,୯୭୨ | ୪·୩୨ |
| (୮) କଳାହାଣ୍ଡି | ୩୫,୬୭୫ | ୪·୨୯ |
| (୯) ବଲାଙ୍ଗୀର | ୩୫,୧୦୯ | ୪·୨୨ |
| (୧୦) ବାଲେଶ୍ୱର | ୩୪,୦୫୭ | ୪·୧୨ |
| (୧୧) ଖୋର୍ଦ୍ଧା | ୩୧,୫୭୩ | ୩·୭୯ |
| (୧୨) ନବରଙ୍ଗପୁର | ୨୯,୦୫୭ | ୩·୪୯ |
| (୧୩) ପୁରୀ | ୨୬,୮୭୭ | ୩·୨୩ |
| (୧୪) ଅନୁଗୋଳ | ୨୫,୭୬୭ | ୩·୦୯ |
| (୧୫) ଯାଜପୁର | ୨୫,୬୦୫ | ୩·୦୮ |
| (୧୬) ସମ୍ବଲପୁର | ୨୫,୦୫୭ | ୩·୦୦ |
| (୧୭) ରାୟଗଡ଼ା | ୨୪,୪୩୭ | ୨·୯୪ |
| (୧୮) ଢେଙ୍କାନାଳ | ୨୧,୮୩୭ | ୨·୬୩ |
| (୧୯) ଭଦ୍ରକ | ୨୦,୬୬୫ | ୨·୪୮ |
| (୨୦) କେନ୍ଦ୍ରାପଡ଼ା | ୨୦,୨୨୯ | ୨·୪୩ |
| (୨୧) ଜଗତସିଂହପୁର | ୧୯,୫୫୩ | ୨·୩୫ |
| (୨୨) ଫୁଲବାଣୀ–କନ୍ଧମାଳ | ୧୮,୨୬୩ | ୨·୨୦ |
| (୨୩) ନୟାଗଡ଼ | ୧୭,୬୮୬ | ୨·୧୨ |
| (୨୪) ଗଜପତି | ୧୫,୬୮୪ | ୧·୮୮ |
| (୨୫) ନୂଆପଡ଼ା | ୧୫,୦୦୯ | ୧·୮୧ |
| (୨୬) ସୋନପୁର/ସୁବର୍ଣ୍ଣପୁର | ୧୪,୬୧୯ | ୧·୬୬ |
| (୨୭) ମାଲକାନ୍‌ଗିରି | ୧୩,୮୩୭ | ୧·୬୬ |
| (୨୮) ଝାରସୁଗୁଡ଼ା | ୧୨,୨୦୭ | ୧·୪୭ |
| (୨୯) ବୌଦ୍ଧ | ୧୦,୩୫୦ | ୧·୨୪ |
| (୩୦) ଦେଓଗଡ଼ | ୭,୩୫୭ | ୦·୮୮ |
| ସମୁଦାୟ ଓଡ଼ିଶା | ୮,୩୧,୭୬୪ | ୧୦୦·୦୦ |

ଏହି ଗଣନା ବିଶ୍ଳେଷଣ କଲେ ଜଣାଯାଏ, ଓଡ଼ିଶାର କୌଣସି ଜିଲ୍ଲା ଏହି ସମସ୍ୟାରୁ ମୁକ୍ତ ନୁହନ୍ତି । ଗଞ୍ଜାମ ଜିଲ୍ଲାରେ ଓଡ଼ିଶାର ସର୍ବାଧିକ ଶିଶୁ ଶ୍ରମିକ ଚିହ୍ନଟ କରାଯାଇଛି । ଏହା ରାଜ୍ୟର ସମୁଦାୟ ଶିଶୁ ଶ୍ରମିକ ସଂଖ୍ୟାର ଶତକଡ଼ା ୯ ଭାଗ । ଦେଓଗଡ଼ ଜିଲ୍ଲାରେ ଏହି ସଂଖ୍ୟା ରାଜ୍ୟରେ ସର୍ବନିମ୍ନ ଅର୍ଥାତ୍ ମାତ୍ର ୦·୮୮ ପ୍ରତିଶତ । କିନ୍ତୁ ମୟୁରଭଞ୍ଜ (୭ ଶତକଡ଼ା), ସୁନ୍ଦରଗଡ଼ (୫·୬୬ ଶତକଡ଼ା), କଟକ (୪·୯୩–୫ ଶତକଡ଼ା) ଜିଲ୍ଲାରେ ବାଳଶ୍ରମିକ ସଂଖ୍ୟା ଅଧିକ ଚିନ୍ତାଜନକ । ସେହିଭଳି ରାଜ୍ୟର ପ୍ରାୟ ୨୫ ପ୍ରତିଶତ ବାଳଶ୍ରମିକ କୋରାପୁଟ, ଗଞ୍ଜାମ, ନବରଙ୍ଗପୁର, ରାୟଗଡ଼ା, ଗଜପତି, ଫୁଲବାଣୀ, ମାଲକାନଗିରି (ଦକ୍ଷିଣାଞ୍ଚଳ) ଜିଲ୍ଲାରେ ବାସ କରୁଛନ୍ତି । ଉତ୍ତରାଞ୍ଚଳ ଜିଲ୍ଲାଗୁଡ଼ିକରେ ଯଥା–ବାଲେଶ୍ୱର, କେନ୍ଦୁଝର, ସୁନ୍ଦରଗଡ଼, ମୟୁରଭଞ୍ଜ ଜିଲ୍ଲାରେ ୨୧·୦୭ ପ୍ରତିଶତ ; ପୂର୍ବାଞ୍ଚଳ ଜିଲ୍ଲାମାନଙ୍କରେ ପ୍ରାୟ ୨୭ରୁ ୩୦ ପ୍ରତିଶତ ଓ ପଶ୍ଚିମାଞ୍ଚଳ ଜିଲ୍ଲାଗୁଡ଼ିକରେ ୨୭ ପ୍ରତିଶତ ଶିଶୁ ଶ୍ରମିକ ବିଭିନ୍ନ କାର୍ଯ୍ୟରେ ନିୟୁକ୍ତ ।

## ଶିଶୁ ଶ୍ରମିକର କାର୍ଯ୍ୟକ୍ଷେତ୍ର

ରାଜ୍ୟର ଗ୍ରାମ ଓ ସହର ଉଭୟ ଅଞ୍ଚଳରେ ଶିଶୁ ଶ୍ରମିକମାନେ କାମକରନ୍ତି । ଏକ ତଥ୍ୟଅନୁଯାୟୀ ସମୁଦାୟ ଶିଶୁ ଶ୍ରମିକ ସଂଖ୍ୟାର ଶତକଡ଼ା ୮୦ ଭାଗ ଗ୍ରାମାଞ୍ଚଳରେ ଓ ୨୦ ଭାଗ ସହରାଞ୍ଚଳରେ ପରିଦୃଷ୍ଟ । କିନ୍ତୁ ସହରାଞ୍ଚଳରେ ଏମାନଙ୍କ ସଂଖ୍ୟା ଦ୍ରୁତଗତିରେ ବୃଦ୍ଧିପାଉଛି । ଏହାର କାରଣ–ସହରୀକରଣ ଓ ଶିଳ୍ପାୟନ (ଗୁରୁପଦ ସ୍ୱାମୀ ରିପୋର୍ଟ) । ଓଡ଼ିଶାର ଗ୍ରାମାଞ୍ଚଳରୁ କର୍ମ ସଂସ୍ଥାନ ଅନ୍ୱେଷଣରେ ସ୍ଥାନାନ୍ତରିତ ହୋଇ ବିଭିନ୍ନ ସହରର ବସ୍ତି ଅଞ୍ଚଳରେ ବହୁ ଶିଶୁ ଶ୍ରମିକ ରହିଛନ୍ତି ।

ଶିଶୁ ଶ୍ରମିକର କାର୍ଯ୍ୟ ପରିସର ଆଜି ବ୍ୟାପକ ଓ ବିପର୍ଯ୍ୟନକ । ଗ୍ରାମାଞ୍ଚଳରେ ସେମାନେ କେବଳ କୃଷି, ତଦ୍‌ଭିତ୍ତିକ ଶିଳ୍ପ, ଗୋଚାରଣ, ଜାଳେଣୀ ସଂଗ୍ରହ, ହସ୍ତଶିଳ୍ପରେ କାର୍ଯ୍ୟ କରୁଥିବା ବେଳେ ସହରରେ ବିଭିନ୍ନ ଶିଳ୍ପ କାରଖାନାରେ ମଜୁରୀ କରିବା, ଆବର୍ଜନାରୁ ପଲିଥିନ୍, ଭଙ୍ଗାଲୁହା ସଂଗ୍ରହକରିବା, ଗୃହରେ ଶ୍ରମିକ ଭାବେ ବା ଦୋକାନରେ ସହାୟକଭାବେ କାମ କରିବା ସେମାନଙ୍କର ମୁଖ୍ୟ ଜୀବିକା । ନିମ୍ନ ସାରଣୀରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶିଶୁ ଶ୍ରମିକମାନଙ୍କର ମୁଖ୍ୟ କାର୍ଯ୍ୟ ପରିସରର ବିବରଣୀ ପ୍ରଦାନ କରାଗଲା ।

ସାରଣୀ-୩

| କାର୍ଯ୍ୟ | ସ୍ଥାନର ନାମ |
|---|---|
| (୧) ମାଛ ଧରା | ପାରାଦ୍ୱୀପ, ଚିଲିକା, ଗୋପାଳପୁର, ଖଡ଼ିପୁର । |
| (୨) ବିଡ଼ି ବଳିବା | ସମ୍ବଲପୁର, ଭଦ୍ରକ, କେନ୍ଦ୍ରାପଡ଼ା, ଅନୁଗୋଳ, ରେଙ୍ଗାଲି । |
| (୩) ପଥର କଟା ଶିଳ୍ପ | ତାଳଚେର, ଟାପଙ୍ଗ |
| (୪) କୋଇଲା, ଲୁହା ପଥର ସଂଗ୍ରହ । | ଢେଙ୍କାନାଳ, ଅନୁଗୋଳ, ରାଉରକେଲା । |
| (୫) ଧୂପକାଠି ପ୍ରଭୃତି | ଆଠଗଡ଼ ଆଠମଲ୍ଲିକ |
| (୬) ଇଟା ନିର୍ମାଣ | କୋରାପୁଟ, ସ୍ଥାନୀୟ ଇଟାଭାଟି |
| (୭) ବାଣ କାରଖାନା | ବାଲେଶ୍ୱର, ଜଗତସିଂହପୁର, ବ୍ରହ୍ମପୁର ଭଣକାରି, ପଦ୍ମପୁର, ଦଶପଲ୍ଲା । |
| (୮) ଘରୋଇ କାର୍ଯ୍ୟ | ରାଜ୍ୟର ସହର ଓ ଗ୍ରାମର ମଧ୍ୟବିତ୍ତ, ଉଚ୍ଚ ମଧ୍ୟବିତ୍ତ ପରିବାର । |
| (୯) ଆବର୍ଜନାରୁ କାଗଜ, ଲୁହା ସଂଗ୍ରହ, ହୋଟେଲ/ ଦୋକାନରେ ସହାୟକ । | ରାଜ୍ୟର ସହରାଞ୍ଚଳ |
| (୧୦) କୃଷି ଓ ଆନୁଷଙ୍ଗିକ ବୃତ୍ତି | ରାଜ୍ୟର କୃଷି ବହୁଳ ଗ୍ରାମାଞ୍ଚଳ |

ଓଡ଼ିଶାର ଉପକୂଳବର୍ତ୍ତୀ ସ୍ଥାନ, ବନ୍ଦରାଞ୍ଚଳରେ ମାଛ ଧରିବା ଓ ଶିଳ୍ପାଞ୍ଚଳମାନଙ୍କରେ ଲୁହାପଥର ଆଦି ସଂଗ୍ରହ କରିବା ଶିଶୁର ପ୍ରଧାନ କାର୍ଯ୍ୟ । ଗ୍ରାମର କୃଷି ଅପେକ୍ଷା ସହରର ଶିଳ୍ପ କ୍ଷେତ୍ରରେ ଶିଶୁକୁ ଅଧିକ କଷ୍ଟକର ଓ ବିପଦସଙ୍କୁଳ କାମ କରିବାକୁ ପଡ଼ିଥାଏ । ଅପରିଷ୍କାର ଓ ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ କାମ କରିବା ଦ୍ୱାରା ସେମାନଙ୍କର ଶାରୀରିକ ଓ ମାନସିକ କ୍ଷତି ଘଟେ । ଶିଶୁ ଶ୍ରମିକର ବିଭିନ୍ନ ବୃତ୍ତି ଓ ତଦ୍‌ଜନିତ ସ୍ୱାସ୍ଥ୍ୟ ସମସ୍ୟା ସମ୍ପର୍କରେ ନିମ୍ନପ୍ରଦତ୍ତ ସାରଣୀ ତଥ୍ୟ ଦିଏ ।

ସାରଣୀ-୪

| ବୃତ୍ତି/ଶିଳ୍ପ | ବୃତ୍ତିଜନିତ ଶାରୀରିକ କ୍ଷତି |
|---|---|
| (୧) ବିଡ଼ି ବାନ୍ଧିବା | କାଶ, ଯକ୍ଷ୍ମା, ବାତ |
| (୨) ପଥର ଖୋଦେଇ | ଚକ୍ଷୁ ରୋଗ, ଦୃଷ୍ଟିଶକ୍ତି ହ୍ରାସ |
| (୩) ବାଣ | ଫୁସ୍‌ଫୁସ୍, ବୃକକ୍ ରୋଗ, ଅନ୍ଧ, ବିକଳାଙ୍ଗ |
| (୪) ଇଟାଭାଟି | କାଶ, ଶ୍ୱାସ |
| (୫) ଗୃହ ନିର୍ମାଣ | ପଙ୍ଗୁ, ବିକଳାଙ୍ଗ |
| (୬) ହସ୍ତତନ୍ତ, କୁମ୍ଭାର କାମ | ଶ୍ୱାସ, ଯକ୍ଷ୍ମା |
| (୭) ଆବର୍ଜନା ସଂଗ୍ରହ | ଚର୍ମ ଉଦର ରୋଗ |

ଅନୁଧ୍ୟାନରୁ ଜଣାଯାଏ ଯେ, ଓଡ଼ିଶାର ଶିଶୁ ଶ୍ରମିକମାନେ ମାସିକ ମାତ୍ର ୫୦ରୁ ୨୦୦ ଟଙ୍କା ରୋଜଗାର କରିଥାନ୍ତି । ଏଥିପାଇଁ ସେମାନଙ୍କୁ ଦୈନିକ ୮ ଘଣ୍ଟାରୁ ୧୦ ଘଣ୍ଟା ପରିଶ୍ରମ କରିବାକୁ ପଡ଼ିଥାଏ । ଏହି ମଜୁରି ବୟସ୍କ ଶ୍ରମିକମାନଙ୍କ ତୁଳନାରେ ୩୦ରୁ ୫୦ ଶତକଡ଼ା କମ । ଏଣୁ ଶିଶୁ ଶ୍ରମିକଙ୍କୁ ବହୁ ସଂଖ୍ୟାରେ ନିଯୁକ୍ତି ଦିଆଯାଏ । ଆମ ରାଜ୍ୟରେ ସ୍ୱଳ୍ପପୁଞ୍ଜି ବିନିଯୋଗ କରି ଗଢ଼ିଉଠି ଥିବା ଶିଳ୍ପ, ବ୍ୟବସାୟିକ ପ୍ରତିଷ୍ଠାନ ଶିଶୁର ନିଯୁକ୍ତିକୁ ଆର୍ଥିକଲାଭ (Profit) ଓ ଉତ୍ପାଦନ-ପରିବ୍ୟୟ (Cost of Production) ହ୍ରାସ ମାଧ୍ୟମ ରୂପେ ବ୍ୟବହାର କରନ୍ତି ।

ଓଡ଼ିଶାର କେତେକ ଅଞ୍ଚଳରେ ପିଲାମାନେ ବିନା ପାରିଶ୍ରମିକରେ ମଧ୍ୟ କାର୍ଯ୍ୟ କରିଥାନ୍ତି । ପ୍ରାୟତଃ ଗ୍ରାମାଞ୍ଚଳରେ ମହାଜନ, ଜମିଦାର ବା ଧନୀବ୍ୟକ୍ତିଙ୍କ ନିକଟରେ; ଅସଙ୍ଗଠିତ କ୍ଷେତ୍ର ଯଥା-କୃଷି ଓ ଘରୋଇ କ୍ଷେତ୍ରରେ ମାଲିକ ନିକଟରେ ଏମାନେ ଖଟିଥାନ୍ତି ।

## କାରଣ, କୁପ୍ରଭାବ, ପ୍ରତିଷେଧ

ଓଡ଼ିଶାରେ ଶିଶୁ ଶ୍ରମିକ ସମସ୍ୟାର କାରଣ ବିବିଧ, ଯଥା-ଅର୍ଥନୈତିକ, ପାରମ୍ପରିକ ଓ ଶିକ୍ଷାଗତ ସଚେତନତାର ଅଭାବ । ରାଜ୍ୟର ଗ୍ରାମାଞ୍ଚଳରେ ଶିଶୁକୁ କୌଳିକ ବୃତ୍ତିରେ ଦକ୍ଷତା ହାସଲ କରିବା ନିମିତ୍ତ ପ୍ରୋତ୍ସାହନ ଦିଆଯାଏ । ଦାରିଦ୍ର୍ୟର କଶାଘାତରେ ସାମାଜିକ ଓ ଆର୍ଥିକ ନିମ୍ନ ସ୍ତରର ପିଲାଏ ଶିଶୁ ଶ୍ରମିକ ରୂପେ କାର୍ଯ୍ୟ କରିବାକୁ ବାଧ୍ୟ ହୁଅନ୍ତି । ଗରିବ ପରିବାରରେ ଶିଶୁ ଏକ (Economic asset) ଆର୍ଥିକ ରୋଜଗାରର ମାଧ୍ୟମ । ପୁଣି ଓଡ଼ିଶାରେ ସାକ୍ଷରତା ହାର ମଧ୍ୟ କମ ।

ସାରଣୀ-୫

ଓଡ଼ିଶାରେ ସାକ୍ଷରତା ହାର (୧୯୯୧ ଜନଗଣନା)

| (କ) | ସମସ୍ତ ବର୍ଗ (General and ST & ST) (ଖ) | ଅନୁସୂଚିତ ଜାତି (Scheduled Caste) (ଗ) | ଅନୁସୂଚିତ ଜନଜାତି (Scheduled Tribe) (ଘ) |
|---|---|---|---|
| (୧) ପୁରୁଷ | ୬୩·୦୯ | ୫୨·୪୨ | ୩୪·୪୪ |
| (୨) ମହିଳା | ୩୪·୬୮ | ୨୦·୭୪ | ୧୦·୨୧ |
| (୩) ସମୁଦାୟ | ୪୯·୦୯ | ୩୬·୭୮ | ୨୨·୩୧ |

ପ୍ରତ୍ୟେକ ଶ୍ରେଣୀରେ ମହିଳାମାନଙ୍କ ମଧ୍ୟରେ ବହୁସଂଖ୍ୟକ ନିରକ୍ଷର ରହିଛନ୍ତି । ପୁରୁଷମାନଙ୍କ ମଧ୍ୟରେ ସାକ୍ଷରତା ହାର ମଧ୍ୟ ସନ୍ତୋଷଜନକ ନୁହେଁ । ନିରକ୍ଷର ପିତାମାତା ଶିକ୍ଷା ନିମନ୍ତେ ଅର୍ଥ ବିନିଯୋଗ କରିବାକୁ ଅଦରକାରୀ ଓ ଅନୁତ୍ପାଦନକ୍ଷମ ବୋଲି ଭାବି, ଅନେକ ସ୍ଥଳେ ଶିଶୁକୁ ବିଦ୍ୟାଳୟ ପରିବର୍ତ୍ତେ କର୍ମକ୍ଷେତ୍ରକୁ ପ୍ରେରଣ କରିବାକୁ ଶ୍ରେୟସ୍କର ଭାବନ୍ତି । ୟୁନିସେଫ୍ କହେ, ଅଶିକ୍ଷିତ ପିଲାମାନଙ୍କ ମଧ୍ୟରେ ଅଧିକାଂଶ ହେଉଛନ୍ତି ଶିଶୁ ଶ୍ରମିକ ।

କୁମାରପାଙ୍କ ମତରେ, ଏହି କୁପ୍ରଥାର ପ୍ରଭାବ ସୁଦୂର ପ୍ରସାରୀ । ଏହା ଦୀର୍ଘକାଳୀନ ଅର୍ଥନୈତିକ ଦୃଷ୍ଟିକୋଣରୁ

ଅହିତକର । କାରଣ ଯାନ୍ତ୍ରିକ-କୌଶଳ, ବୈଷୟିକ ବ୍ୟାବସାୟିକ ଜ୍ଞାନରହିତ ଶିଶୁ ଶ୍ରମିକର ଗୁହିଦା, ପାରିଶ୍ରମିକ ଜୀବନ ଧାରଣମାନ ସର୍ବଦା ନିମ୍ନ ରହେ । ଏଣୁ ଶିଶୁ ଶ୍ରମିକ ଏକ ଜାତୀୟ ଅପଚୟ (National wastage) ।

ଏହି ପ୍ରଥାର ବ୍ୟାପକତାକୁ ହ୍ରାସ କରି ଏହାର ବିଲୋପସାଧନ ନିମନ୍ତେ ଓଡ଼ିଶାରେ ବହୁ ଯୋଜନା ପ୍ରଣୟନ କରାଯାଇଛି । ଶିଶୁ ଶ୍ରମିକ ଚିହ୍ନଟ ଓ ଥଇଥାନ ବ୍ୟବସ୍ଥା, ମଧ୍ୟାହ୍ନ ଭୋଜନ ଯୋଜନା, ବିନାମୂଲ୍ୟରେ ଶିକ୍ଷାସାମଗ୍ରୀ ଯୋଗାଣ, ବୈଷୟିକ ତାଲିମ ପ୍ରଦାନ ତନ୍ମଧ୍ୟରେ ଅନ୍ୟତମ । ଆମ ସମ୍ବିଧାନର ଧାରା ୨୪, ୩୯ (ଇ), ୩୯ (ଏଫ୍), ୪୫ ତମଧାରା ୧୯୮୬ ମସିହାର ବାଳଶ୍ରମିକ ନିଷେଧ ଓ ନିୟନ୍ତ୍ରଣ ଅଧିନିୟମ । ଆନ୍ତର୍ଜାତୀୟ ସଂସ୍ଥାମାନଙ୍କର ଧ୍ୟେୟ ଓ ଯୋଜନାର ସଫଳ ପ୍ରଣୟନ ଏହି ଉଦ୍ଦେଶ୍ୟ ସାଧନ ନିମନ୍ତେ ପ୍ରୟୋଜନ । ଓଡ଼ିଶାର ଜିଲ୍ଲାସ୍ତରରେ ଜାତୀୟ ଶିଶୁ ଶ୍ରମିକ ପ୍ରକଳ୍ପ କାର୍ଯ୍ୟ କରୁଛି । ଗଞ୍ଜାମ, ସୋନପୁର, ରାୟଗଡ଼ା, ମାଲକାନଗିରି ଆଦି ଜିଲ୍ଲାରେ ସ୍ୱତନ୍ତ୍ର ବିଦ୍ୟାଳୟ ସ୍ଥାପନ କରାଯାଇଛି । ଓଡ଼ିଶାରେ ଶିଶୁ ଶ୍ରମିକ ପ୍ରଥା ବିରୁଦ୍ଧରେ ଜନମତ ଜାଗ୍ରତ କରିବା ପାଇଁ ପାଲା, ଦାସକାଠିଆ, ପଥପ୍ରାନ୍ତନାଟକ ଆଦି ପରିବେଷଣ କରାଯାଉଛି ।

ଶିଶୁ ଶ୍ରମିକ ପ୍ରଥା ସର୍ବାଦୌ ବର୍ଜନୀୟ । ଏହା ରାଜ୍ୟ ତଥା ଦେଶର ଭାବୀନାଗରିକ-ଶିଶୁର ବିକାଶରେ ପ୍ରଧାନ ଅନ୍ତରାୟ । ଏହାର କୁପ୍ରଭାବ ହ୍ରାସ ଓ ଦୂରୀକରଣ ନିମନ୍ତେ ଆବଶ୍ୟକ ପ୍ରତିବଦ୍ଧ ଉଦ୍ୟମ ଓ ଜନ ସହଯୋଗ ।

ମାର୍ଫତ୍-କୃଷ୍ଣପ୍ରସାଦ ପଟ୍ଟନାୟକ,
ଶେରଗଡ଼ ବଙ୍ଗଳା ସାହି,
ବ୍ରହ୍ମପୁର ରେଷ୍ଟ ହାଉସ୍ ନିକଟସ୍ଥ,
ବ୍ରହ୍ମପୁର-୧, ଜି-ଗଞ୍ଜାମ

## ସୁବର୍ଣ୍ଣ ଜୟନ୍ତୀ ସମାରୋହ ଉଦ୍‌ଯାପନ ଉତ୍ସବରେ ସାଂସ୍କୃତିକ କାର୍ଯ୍ୟକ୍ରମ

ଚିତ୍ତାକର୍ଷକ ସାଂସ୍କୃତିକ କାର୍ଯ୍ୟକ୍ରମ ଦେଶଭକ୍ତିମୂଳକ ସଂଗୀତର ଲହର, ଆତସବାଜୀର ଝିଲିମିଲି ଆଲୁଅ ଓ କ୍ରୀଡ଼ା ପ୍ରତିଯୋଗିତା ମଧ୍ୟରେ ବର୍ଷ ବ୍ୟାପୀ ଚାଲିଥିବା ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମାରୋହ ଉଦ୍‌ଯାପନ ହୋଇଯାଇଅଛି । ଏହି ଉପଲକ୍ଷେ ରାଜ୍ୟ କ୍ରୀଡ଼ା ଓ ଯୁବସେବା ବିଭାଗ ପକ୍ଷରୁ ସ୍ଥାନୀୟ କଳିଙ୍ଗ ଷ୍ଟାଡ଼ିୟମରେ ତିନିଦିନ ଧରି ଚାଲିଥିବା କ୍ରୀଡ଼ା ଉତ୍ସବର ଅନ୍ତିମ ଦିବସରେ ଓଡ଼ିଶା ଏକାଦଶ ଓ କଲିକତାର ମହମଡ଼ାନ ସ୍ପୋର୍ଟିଂ ଏକାଦଶ ମଧ୍ୟରେ ଅନୁଷ୍ଠିତ ଫୁଟବଲ ଖେଳରେ ଓଡ଼ିଶାର ବିଜୟ ଏହି ଉତ୍ସବକୁ ଅଧିକ ଆନନ୍ଦ ମୁଖର କରି ଦେଇଥିଲା ।

ଉଦ୍‌ଯାପନ ଉତ୍ସବର ମୁଖ୍ୟ ଅତିଥି ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏହି ପ୍ରଦର୍ଶନୀ ଫୁଟବଲ୍ ଖେଳର ବିଜୟୀ ଓଡ଼ିଶା ଦଳକୁ ଚମ୍ପିଆନ୍ ଟ୍ରଫି ପ୍ରଦାନ କରି ପୁରସ୍କୃତ କରିଥିଲେ ।

ପରେ ପରେ ପରିବେଶକୁ ଉତ୍ସବ ମୁଖର କରି ଆରମ୍ଭ ହୋଇଥିଲା ଭୁବନେଶ୍ୱରର ବିଭିନ୍ନ ସ୍କୁଲ, କଲେଜର ଛାତ୍ର ଛାତ୍ରୀମାନଙ୍କ ଦ୍ୱାରା ପରିବେଷିତ ଦେଶ ଭକ୍ତି ଉପରେ ଆଧାରିତ ଭର୍ଣ୍ଣାଢ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ । ସ୍ୱାଧୀନତା ଆନ୍ଦୋଳନର ଐତିହାସିକ ଘଟଣାବଳୀ ତଥା ଦେଶ ଭକ୍ତି ସଙ୍ଗୀତ ଉପରେ ପର୍ଯ୍ୟବସିତ ଏହି ସାଂସ୍କୃତିକ କାର୍ଯ୍ୟକ୍ରମ ଦର୍ଶକମାନଙ୍କ ମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ସ୍ମୃତି ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଦେଶାତ୍ମବୋଧର ଭାବାବେଗ ସୃଷ୍ଟି କରିଥିଲା । ଏହି କାର୍ଯ୍ୟକ୍ରମରେ ଭୁବନେଶ୍ୱରର ୩୦ଟି ସ୍କୁଲ, କଲେଜର ଛାତ୍ରଛାତ୍ରୀମାନଙ୍କ ବ୍ୟତୀତ ଘଣ୍ଟବାଦ୍ୟ, ଶଙ୍ଖ, ଘୁଙ୍ଗୁ ବାଦ୍ୟ ଓ ପାଇକ ଆଖଡ଼ା ଆଦି ଅଂଶ ଗ୍ରହଣ କରିଥିଲେ । ତାପରେ ଆତସବାଜୀ ପ୍ରତିଯୋଗିତା କରାଯାଇଥିଲା ।

ଏହି ସାଂସ୍କୃତିକ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିବା ଓଡ଼ିଶାର ସଶସ୍ତ୍ର ପୋଲିସ ୭ମ ବାଟାଲିୟନସ୍ଥିତ ପୋଲିସ ହାଇସ୍କୁଲ ଓ ଦ୍ୱିତୀୟ ସ୍ଥାନ ଅଧିକାର କରିଥିବା ମହର୍ଷି କଲେଜକୁ ରାଜ୍ୟ ବିଧାନ ସଭାର ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ ଶିଲ୍ଡ ପ୍ରଦାନ କରିଥିଲେ ।

# ସର୍ବଭାରତୀୟ ପରୀକ୍ଷା ଓ ଓଡ଼ିଆ ପରୀକ୍ଷାର୍ଥୀ

**ଡଃ ସାଧନ୍ ପରିଡ଼ା**

ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷାରେ କିଛି ବର୍ଷ ହେଲା ଓଡ଼ିଶାର ପରୀକ୍ଷାର୍ଥୀମାନଙ୍କ ବିଫଳତା ଆଜି ଅନେକଙ୍କ ପାଇଁ ଚିନ୍ତା ଓ ଉଦ୍‌ବେଗର କାରଣ ହୋଇଛି । ଏଥିପାଇଁ ସରକାର ବି ଚିନ୍ତିତ । ଏହାର ନିରାକରଣମୂଳକ ପଦକ୍ଷେପ ଗ୍ରହଣ କରିବା ପାଇଁ ମୁଖ୍ୟମନ୍ତ୍ରୀ ଏକ ଉଚ୍ଚସ୍ତରୀୟ କମିଟି ଗଠନ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

କେତେକଙ୍କ ମତରେ ରାଜ୍ୟର ରେଭେନ୍‌ସା, ଖଲ୍ଲିକୋଟ ଓ ମେହେର କଲେଜ– ତିନୋଟି ସ୍ୱୟଂଶାସିତ ପୋଷ୍ଟଗ୍ରାଜୁଏଟ୍ କଲେଜରେ ଶିକ୍ଷାର ମାନ ହ୍ରାସ ପାଇବା ଏକ ମୁଖ୍ୟ କାରଣ । ଇଂରାଜୀ, ସାଧାରଣ ଶିକ୍ଷା (General Studies) ତଥା ଆନୁଷଙ୍ଗିକ ଶିକ୍ଷାର ଦୟନୀୟ ଅବସ୍ଥା ମଧ୍ୟ ଏହାର କାରଣ ବୋଲି ଅନେକ ମତପୋଷଣ କରନ୍ତି । ସର୍ବଭାରତୀୟ ପରୀକ୍ଷାରେ ହେଉଥିବା ଲିଖନ ଓ ମୌଖିକ ପ୍ରତିଯୋଗିତାରେ ପ୍ରସ୍ତୁତ ହେବା ପାଇଁ ଉଚ୍ଚମାନର ପ୍ରଶିକ୍ଷଣ କେନ୍ଦ୍ରର ଅଭାବ ଆଉ-ଏକ କାରଣ ବୋଲି ଅନୁଭବ କରାଯାଉଛି ।

ଏହି ପ୍ରସଙ୍ଗରେ ବିଶଦ ଆଲୋଚନା କରି କିଛି ନିର୍ଦ୍ଦିଷ୍ଟ ପ୍ରସ୍ତାବ ଦେବା ଆଗରୁ ପରୀକ୍ଷା ସମ୍ପର୍କରେ କେତୋଟି ତଥ୍ୟ ଆମକୁ ହୃଦୟଙ୍ଗମ କରିବାକୁ ପଡ଼ିବ । ଯଥା : ସମଗ୍ର ଦେଶରେ ପ୍ରତିବର୍ଷ ତିନି ଲକ୍ଷରୁ ବେଶୀ ପରୀକ୍ଷାର୍ଥୀ ଏହି ପରୀକ୍ଷାରେ ବସିଥାନ୍ତି । ନ୍ୟୁନତମ ଯୋଗ୍ୟତା ଯେକୌଣସି ଶୃଙ୍ଖଳା (Arts/Science/ Commerce/ Medicine/ Enginering)ରେ ଗ୍ରାଜୁଏସନ୍ ଥିବାରୁ (Bachelor's Degree) ପ୍ରାୟ ସମସ୍ତେ ଭାଗ୍ୟ ପରୀକ୍ଷା କରିଲାଭଳି ବସିଯାଆନ୍ତି । ଅନେକ ଏହାକୁ ଏକ ପ୍ରକାର କର୍ତ୍ତବ୍ୟ ଭାବି ବି.ଏ. ପାସ୍ କଲା ପରେ ପରେ UPSC କୁ ଫର୍ମ ମଗାଇ ପରୀକ୍ଷାଟା ଦେଇଦିଅନ୍ତି । ଓଡ଼ିଶାରେ ଚାଳିଶ ହଜାର ପିଲା ଗତବର୍ଷ O.A.S. ପରୀକ୍ଷା ପାଇଁ ଆବେଦନ କରି ପ୍ରାୟ ତିରିଶ ହଜାର ପରୀକ୍ଷା ଦେଇଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ IAS/ IPS ମଧ୍ୟ ଦିଅନ୍ତି । କିନ୍ତୁ ସମଗ୍ର ଦେଶରେ ବର୍ଷକୁ ୭୫–୮୦ IAS ଓ IPS ତଥା ଅନ୍ୟାନ୍ୟ Class–I Central Services (Income Tax/Audits and Accounts/ Rlys/ Customs/ Information Service)ରେ ୧୨୦–୧୩୦ ଏବଂ Class–II ରେ ୫୦୦–୫୫୦ ପୋଷ୍ଟ ମାତ୍ର ଥାଏ । ଓଡ଼ିଶାରେ ବର୍ଷକୁ ଗୋଟିଏ ବା ଦୁଇଟି (କୋଟା ସହ) IAS ପୋଷ୍ଟ ଥାଏ; ଗଲାବର୍ଷ ସମଗ୍ର ଦେଶରେ ରିକ୍ରୁଟମେଣ୍ଟ ଗଲା ପରେ ୪୦ରୁ କମ୍ IAS ପୋଷ୍ଟ ଥିଲା । ଉପରେ ଭଲ ପୋଜିସନ୍ ନ ରହିଲେ ଓଡ଼ିଶା ପିଲା ଓଡ଼ିଶା ବାହାରେ ପୋଷ୍ଟିଂ ପାଆନ୍ତି । ତେବେ ପରୀକ୍ଷା ମୁଖ୍ୟତଃ ଏକ ପ୍ରକାର elimination processରେ ହିଁ ହୋଇଥାଏ । ହେବା ସ୍ୱାଭାବିକ କାରଣ ପରୀକ୍ଷାର୍ଥୀଙ୍କ ସଂଖ୍ୟା ଓ ଚାକିରିର ସ୍ଥାନ ସଂଖ୍ୟାର ଅନୁପାତ ଅସ୍ୱାଭାବିକ ଓ କଳ୍ପନାତୀତ ।

ପରୀକ୍ଷା ତିନୋଟି ସ୍ତରରେ ହୋଇଥାଏ । ପ୍ରଥମତଃ preliminary ଦୁଇଟି ପେପରକୁ ନେଇ, ଗୋଟିଏ Optional paper ଦୁଇ ଘଣ୍ଟାର – ଦୁଇ ନମ୍ବର ଲେଖା ୧୫୦ଟି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ, ଆଉଟି General Studies ଦୁଇ ଘଣ୍ଟାର paper– ଏକ ନମ୍ବର ଲେଖା ୧୫୦ଟି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ । ଏହି ପରୀକ୍ଷାରେ ପ୍ରାୟ ୯୬ ପ୍ରତିଶତ ପିଲା କଟିଯାଆନ୍ତି । ତାପରେ mains ସେଥିରେ ଦୁଇଟି Optional Paper ଥାଏ ଯଥା : Sociology ଓ Physics, ଦୁଇଟି Paper ଲେଖା ଅର୍ଥାତ୍ ୨×୩୦୦=୬୦୦ ନମ୍ବର ଓ ୨×୩୦୦=୬୦୦ ନମ୍ବର, ଏହାଛଡ଼ା General Studies ୨ଟି paper ୨×୩୦୦=୬୦୦ ନମ୍ବର, Essay ଗୋଟିଏ paper ୨୦୦ ନମ୍ବର, ସର୍ବମୋଟ ୨୦୦୦ ନମ୍ବର । Preliminary ରେ Objective ପ୍ରଶ୍ନ ଥାଏ, କିନ୍ତୁ Main Examinationରେ Long type ୩୦ ନମ୍ବରବାଲା ପ୍ରଶ୍ନ ଥାଏ, କିନ୍ତୁ ସୀମିତ ଶବ୍ଦରେ ଉତ୍ତର ଲେଖିବାକୁ ପଡ଼େ । Main ପରୀକ୍ଷାରେ Qualifying ବିଷୟ ପୁଣି ଥାଏ General English ଓ MIL, ୧୦୦+୧୦୦=୨୦୦ ନମ୍ବର ଯାହାକି ପରେ ହିସାବକୁ ନିଆଯାଏନା, କିନ୍ତୁ ଏଥିରେ ନ୍ୟୁନତମ/ନିର୍ଦ୍ଦିଷ୍ଟ ନମ୍ବର ନ ରଖିଲେ ପରୀକ୍ଷାର୍ଥୀର ବାକି paper ଦେଖା ଯାଏନା । ତୃତୀୟ ପର୍ଯ୍ୟାୟ ହେଲା Viva Voce ବା ମୌଖିକ/ ସାକ୍ଷାତକାର, ସେଥିରେ ବି ଦୁଇ ତୃତୀୟାଂଶ ପରୀକ୍ଷାର୍ଥୀ ବିଫଳ ହୁଅନ୍ତି ।

ଏଭଳି ଏକ ପରୀକ୍ଷାର ପରିପ୍ରେକ୍ଷୀରେ ଦେଖିଲେ ସହଜରେ ବୁଝିହେବ ଆମ ପିଲାମାନେ କାହିଁକି ଆଶାନୁରୂପକ ସଫଳତା ପାଉନାହାନ୍ତି । ପ୍ରଥମତଃ ଓଡ଼ିଶାରେ ସ୍କୁଲ, କଲେଜମାନଙ୍କରେ ପିଲାକୁ ସ୍ୱାଧୀନ ଚିନ୍ତା କରିବାର ସୁଯୋଗ ମିଳୁନାହିଁ ।

Translation, Composition, Grammar ଯେପରି ଆଗେ ପଢ଼ା ହେଉଥିଲା, home task ଦିଆ ଯାଉଥିଲା ସେଭଳି ଆଉ ନାହିଁ । ସାର୍‌ଙ୍କ ଡାକିବା ନୋଟ୍, ଗାଇଡ୍ ବହିର ନୋଟ୍ ନେଇ ପିଲାଟି ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରେ । କଲେଜକୁ ଆସିଲାବେଳେ text ନ ପଢ଼ି ସେମିତି ବଜାରର notes/criticism ପଢ଼ି ପିଲା ପରୀକ୍ଷାକୁ ଯାଏ । ପ୍ରଶ୍ନ କ'ଣ ମାଗୁଛି, ନ ଦେଖି ଯାହା ଜାଣିଛି, ଯାହା ପଢ଼ିଛି ତାହାହିଁ ସେ ପରୀକ୍ଷାରେ ଲେଖେ । ଗୁଡ଼ାଏ ଲେଖେ, ୟୁନିଭର୍ସିଟି ପ୍ରଶ୍ନପତ୍ରରେ ଶବ୍ଦସୀମା ନ ଥିବାରୁ ଯାନ୍ତୁ ସ୍ୟାନ୍ତୁ ଗୁଡ଼ାଏ ଲେଖି additional paper ୧୫–୨୦ ଭର୍ତ୍ତି କରି ପରୀକ୍ଷାରେ ଲେଖେ । Area Study, ଖବରକାଗଜର ଜାତୀୟ, ଆନ୍ତର୍ଜାତୀୟ ଖବର ଖୁବ୍ କମ୍ ପିଲା କରନ୍ତି/ରଖନ୍ତି । ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ inter-disciplinary studyର ଆବଶ୍ୟକତା ଅନେକ ବେଶୀ । ଓଡ଼ିଶାରେ କଲେଜମାନଙ୍କରେ library facilitiesର ଘୋର ଅଭାବ । ରେଭେନ୍‌ସା କଲେଜରେ ମଧ୍ୟ Time, News Week, New York Times Book Review, London Times Book Review ବା Critical Quarterly ଭଳି ମ୍ୟାଗାଜିନ୍/ ଜର୍ଣ୍ଣାଲ ଦେଖିବାକୁ ମିଳେନା ! ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ ପରୀକ୍ଷାର୍ଥୀଙ୍କୁ ଅନେକ କିଛି ଜାଣିବାକୁ ହେବ Bill Gatesଠାରୁ ଆରମ୍ଭ କରି Monica Lewinsky ପର୍ଯ୍ୟନ୍ତ, Martina Hingisଠାରୁ James Cameron ପର୍ଯ୍ୟନ୍ତ, Arundhati Royଠାରୁ ଆରମ୍ଭ କରି NoamChomsky ପର୍ଯ୍ୟନ୍ତ । General Studies paperରେ ବା interviewରେ ନିଶ୍ଚୟ ଦରକାର ହୋଇପାରେ । ତେଣୁ ସେଥିପାଇଁ infrastructure ସୃଷ୍ଟି କରିବାକୁ ପଡ଼ିବ ।

ଭୁବନେଶ୍ୱର ବା କଟକ ମେଟ୍ରୋପଲିଟାନ୍ ସହର ହେବାକୁ ଯାଉଛି । କିନ୍ତୁ ମେଟ୍ରୋପଲିଟାନ୍ Culture କାହିଁ ? ଦିଲ୍ଲୀ ବା କଲିକତାରେ ଯେପରି ପିଲାଟି ସହଜରେ USIS library ବା British Council libraryକୁ ଯାଇ ଭଲ ଭଲ ଜର୍ଣ୍ଣାଲ ପଢ଼ିପାରିବ, Xerox କରି ଘରକୁ ଆଣି ପାରିବ, ସେପରି ସୁବିଧା ଏଠି କାହିଁ ? Debating club, Public Speaking Forum ପରୀକ୍ଷାର୍ଥୀମାନଙ୍କୁ ସମସାମୟିକ ସାମାଜିକ/ଅର୍ଥନୈତିକ/ ରାଜନୈତିକ ସମସ୍ୟା ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ, ବିଶ୍ଳେଷଣ କରିବା ପାଇଁ, ଅନ୍ୟମାନଙ୍କ ମତ/ବିଚାର ଜାଣିବା ପାଇଁ ସୁଯୋଗ ଦେଇଥାଏ । କଲିକତାରେ Telegraph ଓ Statesman ପତ୍ରିକା ତରଫରୁ ଏପରି ଆଲୋଚନାଚକ୍ର ବର୍ଷସାରା ଲାଗି ରହିଥାଏ । ଉତ୍କଳ ୟୁନିଭର୍ସିଟିରେ, ରେଭେନ୍‌ସା, ଖଲ୍ଲିକୋଟ କଲେଜରେ, ସୂଚନା ଭବନରେ ଏଭଳି ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇ ପାରନ୍ତା । ସର୍ବଭାରତୀୟସ୍ତରରେ ବକ୍ତୃତା, ପ୍ରବନ୍ଧ ପ୍ରତିଯୋଗିତାରେ ପୁରସ୍କୃତ ହୋଇଥିବା ଅନେକ ଓଡ଼ିଆ କଟକ, ଭୁବନେଶ୍ୱର, ଦିଲ୍ଲୀରେ ଅଛନ୍ତି ସେମାନଙ୍କୁ ଆମନ୍ତ୍ରଣ କରି ଆଲୋଚନାଚକ୍ରର ଆୟୋଜନ କରାଯାଇ ପାରନ୍ତା । ଭୁବନେଶ୍ୱରରେ କର୍ମରତ ଅନେକ ଓଡ଼ିଶା–ଆଇ.ଏ.ଏସ୍. କ୍ୟାଡ଼ରର ଅଫିସର ଯେଉଁମାନେ ସେମାନଙ୍କ ସମୟରେ ପ୍ରଥମ ପାଞ୍ଚ–ଦଶ ଜଣଙ୍କ ଭିତରେ ସ୍ଥାନ ପାଇଥିଲେ, ସେମାନଙ୍କୁ "Faculty Persons on invitation" କରି ଅଣାଯାଇ ପାରନ୍ତା । ତାହେଲେ ପରୀକ୍ଷାର୍ଥୀମାନେ ପ୍ରକୃତ ସଫଳତାର କାହାଣୀ ଓ କୌଶଳ ଜାଣିପାରନ୍ତେ ।

ଅନେକ ପରୀକ୍ଷାର୍ଥୀଙ୍କ ଧାରଣା ଏମ୍.ଏ. ବା ଇଞ୍ଜିନିୟରିଂରେ ଭଲ ପୋଜିସନ୍ ଥିଲା ମାନେ IAS/IPSରେ ସେହି ବିଷୟ ନେଲେ ସୁବିଧା ହେବ, ଭଲ ନମ୍ବର ରହିବ । ଏହା ଏକ ଭୁଲ ଧାରଣା । ଓଡ଼ିଶାରୁ ଅନେକ M.A. topers UPSC ପରୀକ୍ଷାରେ Optional paper ତାଙ୍କରି ନିଜ Subject ନେଇ ୧୦ ବା ୨୦ ପ୍ରତିଶତ ନମ୍ବର ପାଇବାର ଦୃଷ୍ଟାନ୍ତ ରହିଛି । ଅଥଚ ଜଣେ IIT ବା MBA କରିଥିବା ପରୀକ୍ଷାର୍ଥୀ Sociology ବା History ନେଇ ୯୦ ପ୍ରତିଶତ ନମ୍ବର ପାଇଛି । କାରଣ କ'ଣ ହୋଇପାରେ ? ନିଶ୍ଚିତ ଭାବରେ ଆମକୁ ଏଠାରେ ମନେ ରଖିବାକୁ ପଡ଼ିବ ଯେ MA ପରୀକ୍ଷା ପଦ୍ଧତି ଓ IAS ପରୀକ୍ଷା ପଦ୍ଧତିରେ ପାର୍ଥକ୍ୟ ରହିଛି । ସିଲାବସ୍ ପ୍ରାୟ ଏକାରକମ, କିନ୍ତୁ ପ୍ରଶ୍ନ ଓ ମୂଲ୍ୟାୟନରେ ଗଭୀର ପାର୍ଥକ୍ୟ ରହିଛି । UPSC ପରୀକ୍ଷାରେ ଉତ୍ତର ନିର୍ଦ୍ଦିଷ୍ଟ ଶବ୍ଦସୀମା ମଧ୍ୟରେ, ନିର୍ଦ୍ଦିଷ୍ଟ ଦୃଷ୍ଟି କୋଣ ପରିଷ୍କାର (clear), ଯଥାର୍ଥ (precise) ଭାଷାରେ ଦେବାକୁ ପଡ଼ିଥାଏ ।

ସବୁଠାରୁ ବଡ଼ କଥା– ଯାହାକି ଆମ ପିଲାମାନେ ଗ୍ରହଣ କରିବା ପାଇଁ ସବୁବେଳେ ପ୍ରସ୍ତୁତ ନଥାନ୍ତି । ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ ପ୍ରସ୍ତୁତି ପର୍ବ ଏକ ଦୀର୍ଘମିଆଦି ଯୋଜନା ହେବା ଆବଶ୍ୟକ । ୫–୬ ମାସ ପଢ଼ାପଢ଼ି କରି 'ସମସ୍ତେ ବସୁଛନ୍ତି, ତେଣୁ ବସିଯିବା' ଏଭଳି ନକରି ଯୁକ୍ତ–୨ ବେଳୁ ଅନ୍ତତଃ General Studies ଓ English (General English, Essay, precis Writing) ପାଇଁ ପ୍ରସ୍ତୁତି ଆରମ୍ଭ କରି ଦେବାକୁ ପଡ଼ିବ । BBC/VOA/ Crossfire/ Aaj Takଠାରୁ ଆରମ୍ଭ କରି OSCAR Awards, Gramy Awards, Nobel Awards, Cricket, Tennis (Sports Round-up) Science Corner, Internet ସମ୍ପର୍କୀୟ ଆଲୋଚନା ତଥ୍ୟକୁ ଦୈନିକ/ସାପ୍ତାହିକ ଭିତ୍ତିରେ ଅନ୍ତଃକରଣ କରିବାକୁ ପଡ଼ିବ । ନିୟମିତ precis ଲେଖିବାକୁ ପଡ଼ିବ । ଅନେକ ବି.ଏ./ଏମ୍.ଏ. ପାଶ୍ କଲା ପରେ ମଧ୍ୟ preciସକୁ essay ପରି ୨–୩ ପାରାଗ୍ରାଫ୍‌ରେ ଲେଖନ୍ତି । ସେଥିପାଇଁ rough precis କରି planning କରିବା, key-ideasକୁ ଲି

ଭାଷାରେ ଏକତ୍ରିତ କରିବା ଓ ଶେଷରେ ଏକ ନିର୍ଦ୍ଦିଷ୍ଟ title ବା ଶୀର୍ଷକ ଦେବା ଭଲ precisର କେତୋଟି ଲକ୍ଷଣ । Essay ପାଇଁ ସେହିପରି ଯୋଜନା (planning) ଦରକାର । ପ୍ରଥମେ ବିଷୟବସ୍ତୁର ଆବଶ୍ୟକତା ଅନୁସାରେ ନିଜେ ଜାଣିଥିବା pointଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ କ୍ରମରେ ସଜାଇ ସହଜ, ବୋଧଗମ୍ୟ ଭାଷାରେ ଏକ argument ବା organic development ଆକାରରେ ପ୍ରକାଶ କରିବା ଭଲ essayର କେତୋଟି ଲକ୍ଷଣ । ପ୍ରତିଯୋଗିତାମୂଳକ ପରୀକ୍ଷାରେ essay paperରେ ୨୦୦ ନମ୍ବରରୁ ୧୮୫–୧୯୦ ପର୍ଯ୍ୟନ୍ତ ନମ୍ବର ଦିଆଯାଇଥାଏ, ଯଦି ଉତ୍ତର ସେଭଳି ଆଶାନୁରୂପକ ହୋଇଥାଏ । ତେବେ topical ହେଉ ବା descriptive ବା reflective ହେଉ ଭଲ essayର ନିର୍ଦ୍ଦିଷ୍ଟ ଶୈଳୀ ଓ ପ୍ରକାଶଭଙ୍ଗୀ ଅଛି ଯାହାକି ଅଭ୍ୟାସରୁ ହିଁ ପରୀକ୍ଷାର୍ଥୀ ଆୟତ୍ତ କରିପାରେ । ଏଥିପାଇଁ Asian Age, The Hindu (ରବିବାର ସଂଖ୍ୟା) India Today, Competition Master ନିୟମିତ ପଢ଼ିବା ଦରକାର ।

ଶେଷରେ ଏହା ମଧ୍ୟ ଆମକୁ ମନେରଖିବାକୁ ହେବ ଯେ, ଏହି ପରୀକ୍ଷା ଜଣେ ପରୀକ୍ଷାର୍ଥୀର ସଫଳ ଜୀବନର 'ଏକମାତ୍ର ମାପକାଠି ନୁହେଁ । ଆଜିକାଲି multinational company ଆସିଲା ପରେ, computer network (IBM/ Microsoft/ Compact)ର ଆକର୍ଷଣ ଜାଣିବା ପରେ ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷା ଅନେକଟା ଗୁରୁତ୍ୱ ହରାଇ ବସିଛି । ଜଣେ MBA କରିଥିବା ଇଞ୍ଜିନିୟର IAS ଠାରୁ ୮–୧୦ ଗୁଣ ବେଶୀ ଦରମା ଓ କର୍ମନୈପୁଣ୍ୟ ଦେଖାଇବାର ସୁଯୋଗ ଦେଉଥିବା MNC (Multi National Company)ରେ ଚେଷ୍ଟା ନ କରି IAS ପାଇଁ UPSC ପରୀକ୍ଷାରେ ବସିବା ଦୁର୍ଭାଗ୍ୟଜନକ ନୁହେଁ କି ? କିଛି ବର୍ଷ ହେଲା ଏମାନେ ହିଁ IAS ପରୀକ୍ଷାର ପ୍ରଥମ ୧୦ ଜଣଙ୍କ ଭିତରେ ରହି ଆସୁଛନ୍ତି । ଏବର୍ଷ ପୁଣି ପ୍ରଥମ ୩ ଜଣଯାକ IIT କାନ୍‌ପୁରରୁ । ଅଥଚ ସେହି IITରୁ ପାଶ୍ କରି ପରେ IIm ଅହମଦାବାଦରୁ MBA କରି କଲିକତାରେ ଏକ MNCରେ କାମ କରୁଥିବା ୩୫ ବର୍ଷର ଯୁବକ ଆଜି ଭାରତରେ ସବୁଠୁ ବେଶୀ ଦରମା ପାଉଛନ୍ତି– ମାସକୁ ୮ ଲକ୍ଷ ଟଙ୍କାରୁ ବେଶୀ (ତଥ୍ୟ– 'India Today') । ତେଣୁ କେହି ଯଦି ଏହି ପରୀକ୍ଷାରେ ସଫଳ ନ ହୁଏ, ତେବେ ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ଉପଲବ୍ଧ ଅନ୍ୟ ସଂସ୍ଥା/ ଚାକିରି ପାଇଁ ସେ ଆଗେଇଯିବା ଉଚିତ୍ ।

ପରିଶେଷରେ ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷାର ସିଲାବସ୍, ପ୍ରଶ୍ନ ଓ ମୂଲ୍ୟାୟନକୁ ଆଖି ଆଗରେ ରଖି ଯଦି ଆମ ପିଲାମାନେ ତାଙ୍କ ପୁରାତନ ଦୃଷ୍ଟିଭଙ୍ଗୀ ଓ ପ୍ରସ୍ତୁତି ଧାରା ବଦଳାଇ ନୂତନ ଆବଶ୍ୟକତା ପ୍ରତି ଧ୍ୟାନ ଦେବେ, ତା'ହେଲେ ସେମାନେ ନିଶ୍ଚୟ ଆଶାନୁରୂପକ ସଫଳତା ହାସଲ କରିବେ– ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେଥିପାଇଁ ଅପରିହାର୍ଯ୍ୟ ସରକାରୀ ଓ କଲେଜ, ୟୁନିଭରସିଟି ସ୍ତରରେ ଉପଯୁକ୍ତ ବାତାବରଣ (environment) ଓ ଅନ୍ତର୍ନିର୍ମାଣ (infrastructure), ଯେପରିକି ଭୁବନେଶ୍ୱର, କଟକ, ବ୍ରହ୍ମପୁର, ସମ୍ବଲପୁର ସ୍ୱୟଂଶାସିତ କଲେଜରେ ସ୍ୱତନ୍ତ୍ର ଲାଇବ୍ରେରୀ, ଇନଫର୍ମେସନ୍ ବୁଥ ଓ କୋଚିଂ ସେଣ୍ଟର ସ୍ଥାପନ ସହ IAS/IPS ଅଫିସର ତଥା ପ୍ରବୀଣ ଅଧ୍ୟାପକ, ଭାଷାବିତ୍, ଅବସରପ୍ରାପ୍ତ ପ୍ରଶାସକ, କୁଳପତିଙ୍କୁ ନେଇ Resource Personnel ଗଠନ, ନିୟମିତ Book-Review, Debating, Public Speaking, Group Discussion Forum ଗଠନ, ଆବଶ୍ୟକୀୟ ଖବରକାଗଜ, ପତ୍ରିକା, କମ୍ପ୍ୟୁଟର, ଜେରକ୍ସ ମେସିନ୍ ଇତ୍ୟାଦିର ବନ୍ଦୋବସ୍ତ ତଥା ବିଭିନ୍ନ ସମୟରେ ପିଲାମାନଙ୍କ ଭିତରେ interaction ଓ model test ପ୍ରବର୍ତ୍ତନ । ଏହାସହିତ ସମଗ୍ର ପ୍ରଦେଶରେ ବିଭିନ୍ନ ଉପଲବ୍ଧ କାର୍ଯ୍ୟକ୍ରମକୁ ପରିଚାଳନା କରିବା ପାଇଁ ଏକ ଉଚ୍ଚସ୍ତରୀୟ Coordination Committee ଗଠନର ଆବଶ୍ୟକତା ରହିଛି । ଏପରି ଏକ କାର୍ଯ୍ୟକ୍ରମ ଆରମ୍ଭ ହେଲେ ସର୍ବଭାରତୀୟ ପରୀକ୍ଷାରେ ଓଡ଼ିଆ ପରୀକ୍ଷାର୍ଥୀଙ୍କ ସଫଳତା ଯେ ତ୍ୱରାନ୍ୱିତ ହେବ, ଏଥିରେ ସନ୍ଦେହ ନାହିଁ ।

---

ଡି ୨/୨, ୟୁନିଟ୍–୮,
ଭୁବନେଶ୍ୱର–୭



ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପୂର୍ତ୍ତି ଓ ୫୨ତମ ସ୍ୱାଧୀନତା ଦିବସର ଶୁଭ ଅବସରରେ ଓଡ଼ିଶା ଜଣାଏ ସଶ୍ରଦ୍ଧ ସମ୍ମାନ ୧୮୦୫ର ଶହୀଦ ଜୟୀ ରାଜଗୁରୁ, ୧୮୫୮ର ଶହୀଦ ମାଧୋ ସିଂହ, ୧୮୮୪ର ଶହୀଦ ବୀର ସୁରେନ୍ଦ୍ର ସାଏ, ୧୯୦୦ର ଶହୀଦ ବିର୍ସାମୁଣ୍ଡା, ୧୯୨୨ର ଶହୀଦ ବାସୁ-ବିସୁନି, ୧୯୩୮ର ଶହୀଦ ବାଜି ରାଉତ, ୧୯୪୧ର ଶହୀଦ ରଘୁ-ଦିବାକର, ୧୯୪୩ର ଶହୀଦ ଲକ୍ଷ୍ମଣ ନାଏକ ଓ ଅଗଣିତ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଯେଉଁମାନଙ୍କର ସ୍ୱାଧୀନତା ଆନ୍ଦୋଳନରେ ଆତ୍ମୋତ୍ସର୍ଗର କାହାଣୀ ଏବେ ବି ରହିଛି ଅମ୍ଳାନ । ସ୍ୱାଧୀନତା ଆନ୍ଦୋଳନକୁ ଉଜ୍ଜୀବିତ କରି ରଖିବା ଦିଗରେ ଉତ୍କଳ ଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଦାନ ଅବିସ୍ମରଣୀୟ ।

# ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ଓଡ଼ିଶାରେ ଅର୍ଥନୈତିକ ପ୍ରଗତିର ଜୟଯାତ୍ରା ଅବ୍ୟାହତ

**କୃଷି**

* ୧୯୯୪-୯୫ରେ ରାଜ୍ୟରେ ରାସାୟନିକ ସାରର ବ୍ୟବହାର ହେକ୍ଟର ପିଛା ୨୩ କି.ଗ୍ରା. ଥିବା ସ୍ଥଳେ ଏହା ୧୯୯୭-୯୮ରେ ୩୬ କି.ଗ୍ରା. କୁ ବୃଦ୍ଧି ପାଇଛି
* ରାଜ୍ୟରେ ଆଳୁର ଚାହିଦା ପୂରଣ କରିବା ନିମନ୍ତେ ୧୪,୬୫୦ ହେକ୍ଟର ଜମିରେ ଆଳୁଚାଷ କରାଯିବା ସଙ୍ଗେ ସଙ୍ଗେ ନଦୀଶଯ୍ୟା ଆଳୁଚାଷ ପ୍ରବର୍ତ୍ତନ କରାଯାଇଛି ।
* ୧୯୯୭-୯୮ରେ ୨୧,୯୬୫ ହେକ୍ଟର ଜମିରେ ଫଳଚାଷ ଆରମ୍ଭ କରାଯାଇଛି ।

**ଜଳସେଚନ**

* ୧୯୯୫ ମାର୍ଚ୍ଚଠାରୁ ବୃହତ ଓ ମଧ୍ୟମ ଜଳସେଚନ ଯୋଜନା ମାଧ୍ୟମରେ ୧,୫୬,୫୮୦ ହେକ୍ଟର ଜମିକୁ ସୁନିଶ୍ଚିତ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଛି ।

**ବିଦ୍ୟୁତ୍ ଶକ୍ତି**

* ଇବ୍ ଥର୍ମାଲ ବିଦ୍ୟୁତ୍ କେନ୍ଦ୍ରର ୨ୟ ୟୁନିଟ୍ ୧୯୯୬ ଜୁନ୍‌ଠାରୁ କାର୍ଯ୍ୟକାରୀ ହୋଇପାରିଛି ।
* ବିଦ୍ୟୁତ୍ ସଂସ୍କାର କ୍ଷେତ୍ରରେ ଓଡ଼ିଶା ସାରା ଦେଶରେ ଆଦର୍ଶ ରାଜ୍ୟର ଗୌରବ ହାସଲ କରିପାରିଛି ।

**ଶିଳ୍ପ**

* ଓସ୍ୱାଲ କମ୍ପାନୀ ଦ୍ୱାରା ପାରାଦୀପଠାରେ ୨,୪୨୦ କୋଟି ଟଙ୍କା ବ୍ୟୟରେ ବାର୍ଷିକ ୧.୯୮ ନିୟୁତ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ ଫସ୍‌ଫେଟିକ୍ ରାସାୟନିକ ସାରକାରଖାନାର ନିର୍ମାଣ କାର୍ଯ୍ୟ ଆରମ୍ଭହୋଇଛି ।
* ଗୋପାଳପୁର ଠାରେ ଟିସ୍କୋ ଦ୍ୱାରା ସର୍ବାଧିକ ବାର୍ଷିକ ୧୦ନିୟୁତ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଏକ ଇସ୍ପାତ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଆରମ୍ଭହୋଇଛି । ତନ୍ମଧ୍ୟରୁ ପ୍ରଥମ ପର୍ଯ୍ୟାୟରେ ଅଢେଇ ନିୟୁତ ଟନ୍ ଇସ୍ପାତ ଉତ୍ପାଦନ ହେବ ।
* ଯାଜପୁର ଜିଲ୍ଲାର ଦୁବୁରୀ ଠାରେ ନୀଳାଚଳ ଇସ୍ପାତ ନିଗମ ଲିମିଟେଡ୍ ଦ୍ୱାରା ୧.୧ ନିୟୁତ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଇସ୍ପାତ କାରଖାନାର ନିର୍ମାଣ କାର୍ଯ୍ୟ ଯଥେଷ୍ଟ ଅଗ୍ରଗତି କରିଛି ।
* ଦାମନଯୋଡ଼ିସ୍ଥିତ ନାଲକୋ ଆଲୁମିନା କାରଖାନାର ସଂପ୍ରସାରଣ କାର୍ଯ୍ୟ ଦ୍ରୁତଗତିରେ ଆଗେଇଚାଲିଛି ।
* ଆଦିତ୍ୟ ଆଲୁମିନିୟମ (ହିଣ୍ଡାଲ୍‌କୋ) ଦ୍ୱାରା ରାୟଗଡ଼ା ଜିଲ୍ଲାର କଂସାରୀଗୁଡ଼ା ଠାରେ ଏକ ଆଲୁମିନା ପ୍ରକଳ୍ପ ଏବଂ ସମ୍ବଲପୁର ଜିଲ୍ଲାର ଲପଙ୍ଗା ରେଳଷ୍ଟେସନ ସନ୍ନିକଟ ବମଲାଇଠାରେ ୧୦,୦୦୦ କୋଟି ଟଙ୍କା ପୁଞ୍ଜି ବିନିଯୋଗରେ ଅଢେଇ ଲକ୍ଷ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ଗୋଟିଏ ଆଲୁମିନିୟମ ସ୍ମେଲ୍‌ଟର କାରଖାନାର ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି ।
* ଉତ୍କଳ ଆଲୁମିନା ଇଣ୍ଟର ନ୍ୟାସନାଲ୍ ଲିମିଟେଡ୍(ଇଣ୍ଡାଲ୍‌କୋ) ଦ୍ୱାରା ୩,୨୦୦ କୋଟି ଟଙ୍କା ବ୍ୟୟରେ ୨ଟି ପର୍ଯ୍ୟାୟରେ ରାୟଗଡ଼ା ଜିଲ୍ଲାର ଦୋରାଗୁଡ଼ା ଠାରେ ବାର୍ଷିକ ୧ ନିୟୁତ ଟନ୍ ବିଶିଷ୍ଟ (ପ୍ରଥମ ପର୍ଯ୍ୟାୟ) ଏବଂ ୨ ନିୟୁତ ଟନ୍ ବିଶିଷ୍ଟ (୨ୟ ପର୍ଯ୍ୟାୟ) ଆଲୁମିନା ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇଛି ।
* ୮,୨୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ଇଣ୍ଡିଆନ ଅଏଲ୍ କର୍ପୋରେସନ୍ ଏବଂ କୁଏତ୍ ପେଟ୍ରୋଲ୍ କର୍ପୋରେସନ୍‌ର ମିଳିତ ସହଯୋଗରେ ପାରାଦୀପଠାରେ ବାର୍ଷିକ ୯ ନିୟୁତ ଟନ୍ ଉତ୍ପାଦନ କ୍ଷମତା ବିଶିଷ୍ଟ ତୈଳ ବିଶୋଧନାଗାରର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରାଯାଇଛି ।

**ବନ୍ଦର**

* ଧାମରା-ଚାନ୍ଦବାଲି ସବୁଦିନିଆ ବୃହତ୍ ବନ୍ଦରର ଶୁଭାରମ୍ଭ କାର୍ଯ୍ୟ ଇତି ମଧ୍ୟରେ ସଂପୂର୍ଣ୍ଣ ହୋଇଛି । ୨୦୨୦ ମସିହା ସୁଦ୍ଧା ଏହା ଏସିଆର ୨ୟ ବୃହତ୍ତମ ବନ୍ଦର... ପାଇବ ।

**ଗମନାଗମନ**

* ରାଜ୍ୟ ସରକାରଙ୍କ ସକ୍ରିୟ ସହଯୋଗରେ ୧୭୪ କି.ମି. ... ସମ୍ବଲପୁର ରେଳପଥ ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି ଓ ଏହା ... ୧୫ ତାରିଖରେ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯିବ ।

**ପୂର୍ତ୍ତ**

* ବିଗତ ୩ବର୍ଷ ମଧ୍ୟରେ ୮୦ଟି ସେତୁର ନିର୍ମାଣ କାର୍ଯ୍ୟ ସଂପନ୍ନ ହୋଇଛି... ସେତୁ ନିର୍ମାଣାଧୀନ ଅଛି ।

**ଶିକ୍ଷା**

* ପ୍ରାଥମିକ ବିଦ୍ୟାଳୟ ମାନଙ୍କରେ ଖାଲି ପଡ଼ିଥିବା ୧୨,୦୦୦ ଶିକ୍ଷକ... ଦେବାର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ତନ୍ମଧ୍ୟରୁ ୮,୦୦୦ ଶିକ୍ଷକଙ୍କୁ... ନିଯୁକ୍ତି ଦିଆଯାଇଛି ।
* ପ୍ରାଥମିକ ବିଦ୍ୟାଳୟରେ ଉପସ୍ଥାନ ବୃଦ୍ଧି ନିମନ୍ତେ ୪୦,୩୦୨ଟି ବିଦ୍ୟା... ୪୦.୩୩ ଲକ୍ଷ ଛାତ୍ରଛାତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ଯୋଗାଇ ଦିଆଯାଉଛି ।

**ସ୍ୱାସ୍ଥ୍ୟ**

* ବିଗତ ୩ ବର୍ଷ ମଧ୍ୟରେ ୪୬ଗୋଟି ନୂତନ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ... ଆୟୁର୍ବେଦିକ ଡାକ୍ତରଖାନା, ୧୮ଟି ନୂତନ ହୋମିଓପ୍ୟାଥିକ୍ ଡାକ୍ତରଖାନା ... ୟୁନାନୀ ଡାକ୍ତରଖାନା ପ୍ରତିଷ୍ଠା କରାଯାଇଛି ।
* ଭୁବନେଶ୍ୱର ଠାରେ ଏକ ବେସରକାରୀ ସଂସ୍ଥା ଦ୍ୱାରା ଗୋଟିଏ ... ମହାବିଦ୍ୟାଳୟ ଓ ଗୋଟିଏ ମେଡିକାଲ୍ କଲେଜ ସ୍ଥାପନ ଏବଂ ... ବେସରକାରୀ ଉଦ୍ୟମରେ ଅନ୍ୟଏକ ମେଡିକାଲ କଲେଜ ସ୍ଥାପନ କରିବା ... ସ୍ୱୀକୃତି ପ୍ରଦାନ କରାଯାଇଛି ।

**ସାମାଜିକ ନ୍ୟାୟ**

* କ୍ଷୁଧାରୁ ମୁକ୍ତି ଅଭିଯାନରେ ରାଜ୍ୟର ୧୪୩ଟି ବ୍ଲକ୍‌ରେ ଦାରିଦ୍ର୍ୟ ସୀମାରେଖା ... ଥିବା ୨୦ ଲକ୍ଷ ୩୨ ହଜାର ପରିବାରଙ୍କୁ ଗତ ୩ବର୍ଷ ମଧ୍ୟରେ କିଲୋ ପିଛା ... ଦରରେ ଚାଉଳ ଯୋଗାଇ ଦିଆଯାଉଛି ।
* ଇତି ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପେନ୍‌ସନ୍ ୩୦୦ ଟଙ୍କାରୁ ... ବୃଦ୍ଧି କରାଯାଇଛି ।

**ଆଇନଶୃଙ୍ଖଳା**

* ରାଜ୍ୟରେ ସାମ୍ପ୍ରଦାୟିକ ସଦ୍‌ଭାବ ଓ ସଂପ୍ରୀତି ବଜାୟ ରହିବା ସହ ... ଆଇନଶୃଙ୍ଖଳା ପରିସ୍ଥିତି ନିୟନ୍ତ୍ରଣାଧୀନ ଓ ସନ୍ତୋଷଜନକ ରହିଛି ।

ଓଡ଼ିଶା ସରକାର

ସୂଚନା ଓ ଲୋକସଂପର୍କ ବିଭାଗ

# ସମ୍ବାଦ ପରିକ୍ରମା

## ସମ୍ଭାବ୍ୟ ମରୁଡ଼ି ପରିସ୍ଥିତି ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

ଚଳିତ ବର୍ଷ ବୃଷ୍ଟିହୀନଜନିତ ପରିସ୍ଥିତି ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଗଷ୍ଟ ୨୮ ତାରିଖରେ ସଚିବାଳୟଠାରେ ଏକ ଉଚ୍ଚସ୍ତରୀୟ ବୈଠକରେ ସମୀକ୍ଷା କରିବା ସଙ୍ଗେ ସଙ୍ଗେ ସମ୍ଭାବ୍ୟ ମରୁଡ଼ି ପରିସ୍ଥିତିକୁ ସମ୍ଭାଳିବା ପାଇଁ ଉଠା ଜଳସେଚନ ପଏଣ୍ଟଗୁଡ଼ିକ କାର୍ଯ୍ୟକ୍ଷମ କରିବା ଓ କୃଷୀମାନଙ୍କୁ ସୁବିଧାରେ ଡିଜେଲପମ୍ପ ସେଟ୍ ଯୋଗାଇ ଦେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ସମୀକ୍ଷାରୁ ଜଣାପଡ଼ିଛି ଯେ, ଅଗଷ୍ଟ ମାସରେ ଯାହା ବର୍ଷା ହେବାକଥା ଏବର୍ଷ ତାହା ଶତକଡ଼ା ୫୦ ଭାଗ କମ୍ ରହିଛି । ଆଗାମୀ ସପ୍ତାହ ଭିତରେ ଭଲ ବର୍ଷା ନହେଲେ ଖରିଫ୍ ଫସଲର ପରିସ୍ଥିତି ସଙ୍କଟଜନକ ହୋଇପଡ଼ିବ ବୋଲି ଆଶଙ୍କା ପ୍ରକାଶ ପାଇଛି । ଗତବର୍ଷ ଏହି ସମୟ ମଧ୍ୟରେ ଧାନରୁଆ ଶତକଡ଼ା ୮୫ ଭାଗ ଓ ବେଉଷଣ ଶତକଡ଼ା ୧୦୦ ଭାଗ ସରିଯାଇଥିଲେ ମଧ୍ୟ ଚଳିତ ବର୍ଷ ଏହା ଯଥାକ୍ରମେ ଶତକଡ଼ା ୬୦ ଭାଗ ୭୦ ଭାଗ ରହିଛି । ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଓ ବଲାଙ୍ଗୀର ଜିଲ୍ଲାରେ ବୃଷ୍ଟିହୀନ ଯୋଗୁ ବିଶେଷ ପ୍ରଭାବିତ ହୋଇଛି । ରାଜ୍ୟର ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ କେତେକ ଅଞ୍ଚଳ ମଧ୍ୟ କ୍ଷତିଗ୍ରସ୍ତ ହେବାର ଆଶଙ୍କା ରହିଛି । ବର୍ଷା ଅଭାବରୁ ରାଜ୍ୟର ଜଳଭଣ୍ଡାରଗୁଡ଼ିକରେ ଯଥେଷ୍ଟ ପାଣି ଗଚ୍ଛିତ ହୋଇ ରହିନାହିଁ ।

କ୍ଷତିଗ୍ରସ୍ତ ଅଞ୍ଚଳମାନଙ୍କରେ ଉଠାଜଳସେଚନ ପଏଣ୍ଟଗୁଡ଼ିକୁ ସକ୍ରିୟ କାର୍ଯ୍ୟକାରୀ ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଥିଲେ । ଏଥିପାଇଁ ବିପର୍ଯ୍ୟୟ ପାଣ୍ଠିରୁ ଉଠାଜଳସେଚନ ନିଗମକୁ ଯୋଗାଇ ଦିଆଯାଇଥିବା ଅଢ଼େଇ କୋଟି ଟଙ୍କାକୁ ଉପଯୋଗ କରି ୧୦,୫୦୦ ଉଠାଜଳସେଚନ ପଏଣ୍ଟକୁ ଚଳିତମାସ ଶେଷ ସୁଦ୍ଧା ସକ୍ରିୟ କରିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ସେ କହିଥିଲେ ଯେ, ଇ.ଏ.ଏସ୍. ଓ ଜେ.ଆର୍.ୱାଇ. ଯୋଜନା ମାଧ୍ୟମରେ ବନ୍ଧସବନ୍ଧ ନିର୍ମାଣ କରାଗଲେ ଲୋକେ କାମଧନ୍ଦା ପାଇପାରିବେ ଓ ଧାନକ୍ଷେତକୁ ପାଣି ମଧ୍ୟ ଯୋଗାଇ ପାରିବ । ଗ୍ରାମାଞ୍ଚଳର କୃଷୀମାନଙ୍କୁ ଡିଜେଲ ଚାଳିତ ପମ୍ପସେଟ୍ ସୁବିଧା ଦରରେ ଯୋଗାଇ ଦେବାପାଇଁ ମଧ୍ୟ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଏଥିପାଇଁ ବିପର୍ଯ୍ୟୟ ପାଣ୍ଠିରୁ ୫୦ ଲକ୍ଷ ଓ କୃଷି ବିଭାଗରୁ ୫୦ ଲକ୍ଷ ଟଙ୍କା ଖର୍ଚ୍ଚ କରାଯିବ । ପ୍ରଭାବିତ ଅଞ୍ଚଳରେ ଧାନ ଚାଉଳ ଦର ବଢ଼ିଯିବାର ଆଶଙ୍କା ରହିଥିବାରୁ ସାଧାରଣ ବଣ୍ଟନ ପ୍ରଣାଳୀରେ ଯଥେଷ୍ଟ ପରିମାଣର ଚାଉଳ ଓ ଗହମ ସେଠାକୁ ପଠାଇବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ବର୍ତ୍ତମାନ ସରକାରଙ୍କ ପାଖରେ ଯଥେଷ୍ଟ ପରିମାଣର ଗହମ ମହଜୁଦ ରହିଛି ଏବଂ ଆଉ ୧୦ ହଜାର ଟନ୍ ଅଧିକ ଚାଉଳ ପଠାଇବା ପାଇଁ କେନ୍ଦ୍ର ସରକାରଙ୍କୁ ଚିଠି ଲେଖାଯାଇଛି ବୋଲି ବିଭାଗୀୟ ଶାସନ ସଚିବ ପ୍ରକାଶ କରିଥିଲେ ।

ଜିଲ୍ଲାର ପଛୁଆ ଓ ଆଦିବାସୀ ଅଞ୍ଚଳରେ ଥିବା ମାଗଣା ଭୋଜନ କେନ୍ଦ୍ର ଓ ପ୍ରାଥମିକ ସ୍କୁଲ ଛାତ୍ରଛାତ୍ରୀଙ୍କ ମଧ୍ୟାହ୍ନ ଭୋଜନ କାର୍ଯ୍ୟକ୍ରମ ଜୋର୍‌ସୋରରେ ଚାଲୁରହିବା ଓ ବାର୍ଦ୍ଧକ୍ୟ ଭତ୍ତା ପାଉଥିବା ବୁଢ଼ାବୁଢ଼ୀମାନେ ଯେପରି ଠିକ୍ ସମୟରେ ଭତ୍ତା ପାଇପାରିବେ ସେଥିପ୍ରତି ସଜାଗ ରହିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ସେହିପରି ଇ.ଏ.ଏସ୍., ଜେ.ଆର୍.ୱାଇ. ଗ୍ରାମାଞ୍ଚଳ ରାସ୍ତା ନିର୍ମାଣ ଆଦି କାର୍ଯ୍ୟକ୍ରମ ଜରିଆରେ ଲୋକଙ୍କୁ ଯଥେଷ୍ଟ କାମଧନ୍ଦା ଯୋଗାଇ ଦିଆଯିବା ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ଖରିଫ୍ ଫସଲର ସମ୍ଭାବ୍ୟ କ୍ଷୟକ୍ଷତି ଭରଣା କରିବା ପାଇଁ ଆଗୁଆ ରବି ଫସଲ ଚାଷକୁ ଉତ୍ସାହିତ କରାଯିବ ଏବଂ ଏଥିପାଇଁ ଶସ୍ତା ଦରରେ ବିହନ ଯୋଗାଇ ଦିଆଯିବ ବୋଲି ବୈଠକରେ ନିଷ୍ପତ୍ତି କରାଯାଇଛି ।

ଏହି ବୈଠକରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକ, ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରସନ୍ନ କୁମାର ମିଶ୍ର, କୃଷି ଉତ୍ପାଦନ କମିଶନର ଶ୍ରୀ ଅଭୟ ରଥ, ସ୍ୱତନ୍ତ୍ର ରିଲିଫ୍ କମିଶନର ଶ୍ରୀ ପ୍ରସନ୍ନ କୁମାର ହୋତା, ଶାସନ ସଚିବ, ରାଜସ୍ୱ ବିଭାଗ ଶ୍ରୀ ଯୁଗଳ କିଶୋର ମହାପାତ୍ର, କୃଷି ବିଭାଗ ଶାସନ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ, ଜଳସମ୍ପଦ ବିଭାଗ ଶାସନ ସଚିବ ଶ୍ରୀ ରବି ନାରାୟଣ ସେନାପତି, ଶକ୍ତି ବିଭାଗ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ଶାସନ ସଚିବ ଶ୍ରୀ ଜୟନ୍ତ ଦେବ, ପଞ୍ଚାୟତିରାଜ ବିଭାଗ ଶାସନ ସଚିବ ଶ୍ରୀ ଚିନ୍ମୟ ବସୁ ଓ

ଅନ୍ୟାନ୍ୟ ପଦସ୍ଥ ଅଧିକାରୀମାନେ ଯୋଗଦାନ କରି ଆଲୋଚନାରେ ଭାଗ ନେଇଥିଲେ ।

## ଓଡ଼ିଶାରେ ଜାତୀୟ ରାଜପଥର ଅଗ୍ରଗତି ସମୀକ୍ଷା

ଓଡ଼ିଶାରେ ଜାତୀୟ ରାଜପଥର ବିକାଶ ପାଇଁ କେନ୍ଦ୍ର ସରକାର ଦଫାୱାରୀ କାର୍ଯ୍ୟକ୍ରମ ଗ୍ରହଣ କରୁଛନ୍ତି ବୋଲି କେନ୍ଦ୍ର ଭୂପୃଷ୍ଠ ପରିବହନ ରାଷ୍ଟ୍ରମନ୍ତ୍ରୀ ଡକ୍ଟର ଦେବେନ୍ଦ୍ର ପ୍ରଧାନ ରାଜ୍ୟ ଅତିଥିଭବନଠାରେ ଆହୂତ ଏକ ଉଚ୍ଚସ୍ତରୀୟ ସମୀକ୍ଷା ବୈଠକରେ ପ୍ରକାଶ କରିଛନ୍ତି । ଉକ୍ତ ବୈଠକରେ ରାଜ୍ୟ ପୂର୍ତ୍ତ ମନ୍ତ୍ରୀ ଶ୍ରୀ ହରିହର ସ୍ୱାଇଁ ଏବଂ ରାଜ୍ୟ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ରଙ୍କ ସମେତ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରସନ୍ନ କୁମାର ମିଶ୍ର, କେନ୍ଦ୍ର ଭୂପୃଷ୍ଠ ପରିବହନ ସଚିବ, ମହା ନିର୍ଦ୍ଦେଶକ (ରାସ୍ତା), ସ୍ୱରାଷ୍ଟ୍ର ବିଭାଗ ପ୍ରମୁଖ ସଚିବ, ଅର୍ଥ ସଚିବ, ପୂର୍ତ୍ତ ସଚିବ ପ୍ରଭୃତି ଉକ୍ତ ସମୀକ୍ଷା ବୈଠକରେ ଭାଗ ନେଇଥିଲେ ।

ରାଜ୍ୟରେ ସମୁଦାୟ ୧୬୭୭ କି.ମି. ଜାତୀୟ ରାଜପଥର ୧୩୭୭ କି.ମି. ଦୋହରା ରାସ୍ତା ଅଟେ । ରାଜ୍ୟ ସରକାର ମୋଟ ୨୩୧୮ କି.ମି. ଦୈର୍ଘ୍ୟ ବିଶିଷ୍ଟ ୮ ଗୋଟି ରାସ୍ତାକୁ ଜାତୀୟ ରାଜପଥ ଘୋଷଣା କରିବା ପାଇଁ କେନ୍ଦ୍ର ସରକାରଙ୍କୁ ପ୍ରସ୍ତାବ ଦେଇଛନ୍ତି । ସମ୍ବଳର ବ୍ୟବସ୍ଥା ହେବାପରେ କେନ୍ଦ୍ର ସରକାର ଏଥିମଧ୍ୟରୁ କେତେକ ରାସ୍ତାକୁ ଜାତୀୟ ରାଜପଥ ଘୋଷଣା କରିବେ ବୋଲି ମନ୍ତ୍ରୀ ଡକ୍ଟର ପ୍ରଧାନ ପ୍ରକାଶ କରିଥିଲେ ।

ବିଦେଶୀ ପୁଞ୍ଜି ସହାୟତାରେ କେନ୍ଦ୍ର ସରକାର ଓଡ଼ିଶାରେ ଦୁଇଟି ବିଶିଷ୍ଟ ରାସ୍ତାକୁ ୪ ଧାର ବିଶିଷ୍ଟ ରାସ୍ତାରେ ପରିଣତ କରୁଛନ୍ତି । ୨୧୮ କୋଟି ଟଙ୍କା ବ୍ୟୟରେ ୨୭.୮ କି.ମି. ଦୈର୍ଘ୍ୟ କଟକ–ଭୁବନେଶ୍ୱର ରାସ୍ତାର ଦୋହରା କାର୍ଯ୍ୟ ଆଗେଇ ଚାଲିଛି । ଏହା ୨୦୦୦ ମସିହା ମାର୍ଚ୍ଚ ସୁଦ୍ଧା ସମ୍ପୂର୍ଣ୍ଣ ହେବାର ଆଶା ରଖାଯାଇଛି । ୧୩୭ କୋଟି ଟଙ୍କା ଅଟକଳରେ ୩୩.୨ କି.ମି. ଦୈର୍ଘ୍ୟ ଜଗତପୁର–ଚଣ୍ଡୀଖୋଲ ରାସ୍ତା ପାଇଁ ଟେଣ୍ଡର ଆହ୍ୱାନ କରାଯାଇଛି । ଏହା ସମ୍ପୂର୍ଣ୍ଣ ହେବାକୁ ୩ ବର୍ଷ ସମୟ ନେବ । ୬.୫ କି.ମି. ଦୈର୍ଘ୍ୟର ଅନ୍ୟ ଏକ ରାସ୍ତା ୪ ଧାର ବିଶିଷ୍ଟ ହୋଇ ଯାଇଛି । ଏହିପରି ମୋଟ ୭୭.୫ କି.ମି. ରାସ୍ତା ୪ ଧାର ବିଶିଷ୍ଟ ହେବ ।

ରାଜ୍ୟରେ ଚାଲୁ ରହିଥିବା ୯୨ ଗୋଟି କାର୍ଯ୍ୟ ମଧ୍ୟରୁ ୭୨ ଟିର କାର୍ଯ୍ୟ ଚଳିତ ବର୍ଷ ସମ୍ପୂର୍ଣ୍ଣ ହୋଇଯିବ । ଏହାଦ୍ୱାରା ୧୨୦ କି.ମି. ଜାତୀୟ ରାଜପଥର ବିକାଶ ଘଟିବ । ୨୩ ନମ୍ବର ଜାତୀୟ ରାଜପଥର ୩୦.୭୪ କି.ମି. ରାସ୍ତାର ଦୋହରା କାର୍ଯ୍ୟ ଆଗେଇ ଚାଲିଛି । ଏହି ରାଜପଥରେ ସଂଯୋଗୀକରଣ କାର୍ଯ୍ୟ ମଧ୍ୟ ଭଲଭାବରେ ଆଗେଇ ଚାଲିଛି ।

୧୯୯୮–୯୯ ଆର୍ଥିକ ବର୍ଷରେ କେନ୍ଦ୍ର ସରକାର ମୂଳ କାମ ପାଇଁ ୩୦ କୋଟି ଏବଂ ବୈଦେଶିକ ସହାୟତାରୁ ୫୦ କୋଟି ଟଙ୍କା ଚାଲୁରହିଥିବା ପ୍ରକଳ୍ପଗୁଡ଼ିକ ପାଇଁ ବ୍ୟବସ୍ଥା କରିଛନ୍ତି ବୋଲି ମନ୍ତ୍ରୀ ଡକ୍ଟର ପ୍ରଧାନ ପ୍ରକାଶ କରିଥିଲେ । ଏହାର ରକ୍ଷଣାବେକ୍ଷଣ ଓ ମରାମତି ପାଇଁ ଚଳିତ ବର୍ଷ ୧୮.୨ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି ।

ବାଲେଶ୍ୱର–ଖଡ଼ଗପୁର ଜାତୀୟ ରାଜପଥକୁ ୪ ଧାର ବିଶିଷ୍ଟ କରିବାର କାର୍ଯ୍ୟ କେନ୍ଦ୍ର ସରକାରଙ୍କ ଜାତୀୟ ରାଜପଥ କର୍ତ୍ତୃପକ୍ଷ ତାଙ୍କ ଗଚ୍ଛିତ ପାଣ୍ଠିରୁ ସହାୟତା କରୁଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ପ୍ରଧାନ ପ୍ରକାଶ କରିଥିଲେ ।

## ଦେଶରେ କାଜୁ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶାର ସ୍ଥାନ ଚତୁର୍ଥ

ରାଜ୍ୟ ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟ ଦ୍ୱାରା ଏବଂ ଓଡ଼ିଶା ରାଜ୍ୟ କାଜୁ ଉନ୍ନୟନ ନିଗମ ତଥା ଭାରତୀୟ ରପ୍ତାନୀ ଉନ୍ନୟନ ପରିଷଦ ସହଯୋଗରେ ଅନୁଷ୍ଠିତ 'ଓଡ଼ିଶା କାଜୁ ରପ୍ତାନୀ' ଶୀର୍ଷକ କର୍ମଶାଳାରେ ଶିଳ୍ପ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ମୁଖ୍ୟ ଅତିଥିଭାବେ ଯୋଗ ଦେଇ କହିଲେ ଯେ ଦେଶର କାଜୁ ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ଚତୁର୍ଥ ସ୍ଥାନ ଅଧିକାର କରିଛି । ଆମର ୮୦ ଭାଗ ଲୋକ ଗ୍ରାମାଞ୍ଚଳରେ କୃଷି ଉପରେ ନିର୍ଭର କରନ୍ତି । ଦେଶରେ କାଜୁ ଉତ୍ପାଦନ କ୍ଷେତ୍ରରେ କେରଳ, ମହାରାଷ୍ଟ୍ର, ଆନ୍ଧ୍ର ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିଛି ।

ଆମ ରାଜ୍ୟରେ ସମୁଦାୟ ଏକ ଲକ୍ଷ ୫ ହଜାର ହେକ୍ଟର କାଜୁ ବଗିଚା ରହିଛି ଏବଂ ଉକ୍ତ କାଜୁ ବଗିଚାରୁ ବର୍ଷକୁ ପ୍ରାୟ ୪୦ ହଜାର ମେଟ୍ରିକ୍ ଟନ୍ କାଜୁମଞ୍ଜି ଉତ୍ପାଦନ ହେଉଛି । ଆମ ଦେଶରୁ ବିଭିନ୍ନ ଦେଶକୁ ମୋଟ୍ ୮୦ ହଜାର ମେଟ୍ରିକ୍ ଟନ୍ କାଜୁଦାନା ରପ୍ତାନୀ ହେଉଥିବା ସ୍ଥଳେ ଓଡ଼ିଶାରୁ ମାତ୍ର ୩୧ ମେଟ୍ରିକ୍ ଟନ୍ ବିଦେଶକୁ ରପ୍ତାନୀ ହେଉଛି । ଏହାର ମୁଖ୍ୟ କାରଣ, ଆମର ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ କ୍ଷେତ୍ରରେ ଆଶାନୁରୂପ ପ୍ରଗତି ହୋଇପାରି ନାହିଁ । ଆମ ରାଜ୍ୟରେ କାଜୁ ଉତ୍ପାଦନ ହାର ବୃଦ୍ଧି କରି ଜାତୀୟ ସ୍ତରରେ କାଜୁ ଉତ୍ପାଦନ ହାରର ସମକକ୍ଷ ହେବା ପାଇଁ ଓଡ଼ିଶା କାଜୁ ରପ୍ତାନୀ ଶୀର୍ଷକ କର୍ମଶାଳାରେ ବିସ୍ତୃତଭାବେ ଆଲୋଚନା କରାଯାଇଥିଲା ।

ଏହି କର୍ମଶାଳାରେ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ଶିଳ୍ପ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ସନ୍ତୋଷ କୁମାର ନୋଟିଆଲ, କୃଷି ବିଭାଗ ଶାସନ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ, ଭାରତୀୟ କାଜୁ ରପ୍ତାନୀ ଉନ୍ନୟନ ପରିଷଦର ମୁଖ୍ୟ ନିର୍ବାହୀ ତଥା ସଚିବ ଡଃ କେ. ଜି. ନାମ୍ବାର, କୃଷି ବିଜ୍ଞାନୀ ଶ୍ରୀ ଜେ. ସାହାଣୀ, ଓଡ଼ିଶା ରାଜ୍ୟ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଉଦ୍ୟାନବିତ୍ ଡଃ ପି. ସି. ଲେଙ୍କା, ଓଡ଼ିଶା କାଜୁ ଉନ୍ନୟନ ନିଗମର ସଭାପତି ଶ୍ରୀ ହରିହର ସାହୁ, ଶ୍ରୀ ଆର୍. ପି. ଦ୍ୱିବେଦୀ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ଶିମିଳିପାଳ ସଂରକ୍ଷିତ ଜଙ୍ଗଲର ଜୀବ ମଣ୍ଡଳ ସୁରକ୍ଷା ସମ୍ପର୍କରେ ଉଚ୍ଚସ୍ତରୀୟ ଆଲୋଚନା

ଶିମିଳିପାଳ ସଂରକ୍ଷିତ ଜଙ୍ଗଲରେ ବାସ କରୁଥିବା ଜୀବଜନ୍ତୁମାନଙ୍କର ସୁରକ୍ଷା ସମ୍ପର୍କରେ ଏକ ଉଚ୍ଚସ୍ତରୀୟ ଆଲୋଚନା ବୈଠକ ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ରଙ୍କ ଅଧ୍ୟକ୍ଷତାରେ ଗତ ସେପ୍ଟେମ୍ବର ୧୫ ତାରିଖରେ ସଚିବାଳୟଠାରେ ଅନୁଷ୍ଠିତ ହୋଇଥିଲା ।

ଶିମିଳିପାଳ ଜୀବମଣ୍ଡଳର ସୁରକ୍ଷା ତଥା ଉନ୍ନତି କଳ୍ପେ ସଂରକ୍ଷିତ ଜଙ୍ଗଲ ମଧ୍ୟରେ ଓ ଆଖପାଖ ଅଞ୍ଚଳରେ ବସବାସ କରୁଥିବା ଗ୍ରାମବାସୀଙ୍କୁ ନେଇ ଏକ ସ୍ଥାନୀୟ କମିଟି ଗଠନ କରାଯିବ । ଏହି କମିଟିରେ ଜଙ୍ଗଲ ବିଭାଗ କର୍ମକର୍ତ୍ତା, ସ୍ୱେଚ୍ଛାସେବୀ ସଂସ୍ଥା ଓ ନିକଟସ୍ଥ ଗ୍ରାମଗୁଡ଼ିକର ନେତୃସ୍ଥାନୀୟ ବ୍ୟକ୍ତିମାନେ ସଦସ୍ୟ ରହିବେ । ଏହି କମିଟି ନିକଟସ୍ଥ ଲୋକମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ଜୀବ ମଣ୍ଡଳ ସୁରକ୍ଷା ଓ ଜଙ୍ଗଲ ଉନ୍ନତି ସମ୍ପର୍କରେ ଜନ-ସଚେତନତା ସୃଷ୍ଟି କରିବେ । ବିଶେଷ କରି ଜୀବଜନ୍ତୁ ଶିକାର ଓ ଗଛ କାଟିବା କାର୍ଯ୍ୟରୁ ନିବୃତ୍ତ ରହିବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇବେ । ଏହା ବ୍ୟତୀତ ଅନ୍ୟଏକ କମିଟି ଶିମିଳିପାଳ ବନ ମଣ୍ଡଳରେ ବାସ କରୁଥିବା ଜୀବଜନ୍ତୁ ଓ ପରିବେଶ ସମ୍ପର୍କରେ ଗବେଷଣା କରିବେ । ଏହି କମିଟିରେ ବିଶ୍ୱବିଦ୍ୟାଳୟ ଏବଂ ଜଙ୍ଗଲ ଓ ପରିବେଶ ବିଭାଗର ବିଶେଷଜ୍ଞମାନେ ସଦସ୍ୟ ରହିବେ, ଯଦ୍ୱାରା ଶିମିଳିପାଳ ଜଙ୍ଗଲର ଜୀବ ମଣ୍ଡଳ ଓ ପରିବେଶ ସୁରକ୍ଷା ସମ୍ପର୍କରେ ପରାମର୍ଶ ଦେବେ ।

ଶିମିଳିପାଳ ଓ ନିକଟସ୍ଥ ଗ୍ରାମମାନଙ୍କରେ ବସବାସ କରୁଥିବା ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତା ତଥା ବିକାଶ ପାଇଁ ଜିଲ୍ଲା ଆଦିବାସୀ ଉନ୍ନୟନ ସଂସ୍ଥା, ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଓ ମୃତ୍ତିକା ସଂରକ୍ଷଣ ସଂସ୍ଥା ସ୍ୱତନ୍ତ୍ର ଭାବେ ଧ୍ୟାନ ଦେବା ପାଇଁ ମୁଖ୍ୟ ଶାସନ ସଚିବ ଶ୍ରୀ ମିଶ୍ର ପରାମର୍ଶ ଦେଇଥିଲେ । ସେ ଅଞ୍ଚଳରେ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା ପାଇଁ ବୈଠକରେ ନିଷ୍ପତ୍ତି ନିଆଯାଇଛି । ଜୀବ ମଣ୍ଡଳର ବିକାଶ ତଥା ସୁରକ୍ଷା ପାଇଁ କେନ୍ଦ୍ର ସରକାର ଆବଶ୍ୟକ ପାଣ୍ଠି ଯୋଗାଇ ଦେବେ । ଜଙ୍ଗଲ ବିଭାଗରେ ଖାଲି ପଡ଼ିଥିବା ଫରେଷ୍ଟର ଓ ଫରେଷ୍ଟ ଗାର୍ଡ ପଦବୀଗୁଡ଼ିକ ତୁରନ୍ତ ପୂରଣ ପାଇଁ ମୁଖ୍ୟ ଶାସନ ସଚିବ ବିଭାଗୀୟ କର୍ମକର୍ତ୍ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

## ପ୍ରକଳ୍ପ ନିର୍ମାଣ କାର୍ଯ୍ୟ ପାଇଁ ଆଧୁନିକ ବିଜ୍ଞାନ ଓ ବୈଷୟିକ ବିଦ୍ୟାର ପ୍ରୟୋଗ ଆବଶ୍ୟକ

ଆଧୁନିକ ବିଜ୍ଞାନ ଓ ବୈଷୟିକ ବିଦ୍ୟାକୁ ପ୍ରୟୋଗ କରି ଜଳସେଚନ ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟକୁ ନିର୍ଦ୍ଦିଷ୍ଟ ସମୟ ଓ ନିର୍ଦ୍ଧାରିତ ଅର୍ଥ ଅଟକଳ ମଧ୍ୟରେ ଶେଷ କରାଯିବା ଦରକାର ବୋଲି ଉପ ମୁଖ୍ୟମନ୍ତ୍ରୀ ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଗୁରୁତ୍ୱ ଆରୋପ କରିଛନ୍ତି ।

ଗତ ଅଗଷ୍ଟ ୨୪ ତାରିଖରେ ହୋଟେଲ ଗାର୍ଡେନ୍-ଇନ୍‌ଠାରେ ଜଳସେଚନ ପ୍ରକଳ୍ପ ପାଇଁ ନିର୍ମାଣ କରାଯାଇଥିବା ସୁଡ଼ଙ୍ଗର "ନକ୍ସା, ଯୋଜନା ଓ ନିର୍ମାଣ" ସମ୍ପର୍କୀୟ ଏକ କର୍ମଶାଳା ଉଦ୍‌ଘାଟନ କରି ଉପ ମୁଖ୍ୟମନ୍ତ୍ରୀ କହିଲେ ଯେ ରାଜ୍ୟ ସରକାର ୨୦୦୦ ମସିହା ସୁଦ୍ଧା ରାଜ୍ୟର ଶତକଡ଼ା ୫୦ ଭାଗ ଜମିରେ ଜଳସେଚନ ସୁବିଧା ଯୋଗାଇ ଦେବାକୁ ଲକ୍ଷ୍ୟ ରଖିଛନ୍ତି ଏବଂ ସେଥିପାଇଁ ରାଜ୍ୟ ଯୋଜନାରେ ସର୍ବାଧିକ ଗୁରୁତ୍ୱ ଦିଆଯାଇଛି । ସବୁ ନିର୍ମାଣାଧୀନ ବୃହତ ଓ ମଧ୍ୟମ ଜଳସେଚନ ପ୍ରକଳ୍ପଗୁଡ଼ିକୁ ଶେଷ କରିବା ସହ ପୁରାତନ ପ୍ରକଳ୍ପଗୁଡ଼ିକୁ ଅଧିକ କାର୍ଯ୍ୟକ୍ଷମ କରିବା ପାଇଁ ପଦକ୍ଷେପ ନିଆଯାଇଛି । ଏଥିପାଇଁ ୪୦୦୦ କୋଟି ଟଙ୍କା ବିନିଯୋଗର ବ୍ୟବସ୍ଥା କରାଯାଇଛି । ଯୋଜନା କମିଶନ ଲୋୟର ଇନ୍ଦ୍ର, ଲୋୟର ସୁକ୍‌ତେଲ ଓ ଲୋୟର ଇନ୍ଦ୍ରାବତୀ ପ୍ରକଳ୍ପ ସମ୍ପ୍ରସାରଣ, ଅପର କୋଲାବ ଓ ଅପର ଜଙ୍କ ପ୍ରକଳ୍ପକୁ ଅର୍ଥ ଯୋଗାଇ ଦେବାକୁ ସମ୍ମତି ପ୍ରଦାନ କରିଛନ୍ତି । ବିଶେଷ କରି ମରୁଡ଼ିପ୍ରବଣ କେ.ବି.କେ. ଜିଲ୍ଲାରେ ଏହି ଜଳସେଚନ ପ୍ରକଳ୍ପ ଜରିଆରେ ୫୦୦ କୋଟି ଟଙ୍କା ବିନିଯୋଗ ହେବ । ରାଜ୍ୟ ସରକାର ଜଳସେଚନ ପ୍ରକଳ୍ପ ପାଇଁ ବିଶ୍ୱ ବ୍ୟାଙ୍କ୍, ଓ.ଇ.ସି.ଏଫ୍. ଜାପାନ ଓ ନାବାର୍ଡ଼ଠାରୁ ଆବଶ୍ୟକୀୟ ଅର୍ଥ ସହାୟତା ପାଇଛନ୍ତି ।

ଉପ ମୁଖ୍ୟମନ୍ତ୍ରୀ କହିଲେ ଯେ ରେଙ୍ଗାଲି ଜଳସେଚନ ଜରିଆରେ ୨ ଲକ୍ଷ ୩୫ ହଜାର ହେକ୍ଟର ଜମିରେ ଜଳସେଚନ ସୁବିଧା ଯୋଗାଇ ଦିଆଯାଇ ପାରିବ । ଏଥିପାଇଁ ଏହି ପ୍ରକଳ୍ପର ବାମପଟ କେନାଲରେ ୨ଟି ସ୍ଥାନରେ ଏବଂ ଦକ୍ଷିଣପାର୍ଶ୍ୱ କେନାଲର ଗୋଟିଏ ସ୍ଥାନରେ ପଥର କାଟିବାର ଆବଶ୍ୟକତା ପଡୁଛି । ତେଣୁ ସେହି ସ୍ଥାନରେ ଜଳ ପ୍ରବାହ ପାଇଁ ସୁଡ଼ଙ୍ଗ ନିର୍ମାଣ ଲାଗି ପ୍ରସ୍ତାବ କରାଯାଇଛି । ବାମପାର୍ଶ୍ୱ କେନାଲରେ ୪ କି.ମି. ଓ ୨ କି.ମି. ଲମ୍ବ ୨ଟି ସୁଡ଼ଙ୍ଗ ଖନନ କରାଯିବା ବେଳେ ଦକ୍ଷିଣ ପାର୍ଶ୍ୱ କେନାଲରେ ୧.୨ କି.ମି. ଲମ୍ବ ଗୋଟିଏ ସୁଡ଼ଙ୍ଗ ଖନନ କରିବାକୁ ପଡ଼ିବ ବୋଲି ସେ ସୂଚନା ଦେଇଥିଲେ ।

## ସ୍ୱାଭିମାନ ଦିବସ ପାଳନ ପାଇଁ ଗଠିତ କାର୍ଯ୍ୟ ନିର୍ବାହୀ କମିଟିର ସତ୍ୟଭାମାପୁର ଗ୍ରାମ ପରିଦର୍ଶନ

ସ୍ୱାଭିମାନ ଦିବସ ପାଳନ ପାଇଁ ଗଠିତ କାର୍ଯ୍ୟ ନିର୍ବାହୀ କମିଟିର ଅଧ୍ୟକ୍ଷ ତଥା ବିଧି ମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକଙ୍କ ନେତୃତ୍ୱରେ କମିଟିର ସଦସ୍ୟମାନେ ଗତ ସେପ୍ଟେମ୍ବର ୧୩ ତାରିଖ ଦିନ ମଧୁବାବୁଙ୍କ ଜନ୍ମସ୍ଥାନ ସତ୍ୟଭାମାପୁର ଗ୍ରାମ ପରିଦର୍ଶନ କରିଥିଲେ । ବର୍ଷବ୍ୟାପୀ ପାଳିତ ହେଉଥିବା ମଧୁବାବୁଙ୍କ ଜୟନ୍ତୀ ପାଳନ ଅବସରରେ ସତ୍ୟଭାମାପୁରଠାରେ କି କି ପ୍ରକାର କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ପାରିବ, ସେ

ସମ୍ପର୍କରେ ସଦସ୍ୟମାନେ ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ଆଲୋଚନା କରିଥିଲେ ।

ମଧୁବାବୁଙ୍କର ପୈତୃକ ଗୃହକୁ ଅକ୍ଷୁଣ୍ଣ ରଖି ତାହାର ସୁରକ୍ଷା, ତାଙ୍କର ଗୃହକୁ ସଂଯୋଗ କରୁଥିବା ରାସ୍ତାକୁ ପିଚୁ କରିବା, ସେ ଖନନ କରାଇଥିବା ଦୁଇଟି ପୁଷ୍କରିଣୀର ପୁନରୁଦ୍ଧାର, ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟର ମରାମତି, ମଧୁବାବୁ ଅଧ୍ୟୟନ କରିଥିବା ବିଦ୍ୟାଳୟକୁ ରାସ୍ତା ନିର୍ମାଣ ଓ ଏହାକୁ ଆଦର୍ଶ ବିଦ୍ୟାଳୟ ରୂପେ ପରିଣତ କରିବା ନିମନ୍ତେ ପଦକ୍ଷେପ ନେବା, ସାଲେପୁର ବଜାରରେ ମଧୁବାବୁଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ସ୍ଥାପନ କରିବା, ସତ୍ୟଭାମାପୁର ଗ୍ରାମକୁ ଦୁଇପାର୍ଶ୍ୱରୁ ସଂଯୋଗ କରୁଥିବା ରାସ୍ତା ଉପରେ ସ୍ଥାୟୀ ଗେଟ୍ ନିର୍ମାଣ ଏବଂ ତାଙ୍କ ପିତୃଗୃହରେ ମଧୁବାବୁଙ୍କ ଉପରେ ଏକ ପୂର୍ଣ୍ଣାଙ୍ଗ ତଥା ସଫଳିତ ପାଠାଗାର ସ୍ଥାପନ, ମଧୁବାବୁଙ୍କ ଜୀବନୀ ଉପରେ ଏକ ପ୍ରାମାଣିକ ଚଳଚ୍ଚିତ୍ର ପ୍ରଯୋଜନା ଏବଂ ମଧୁବାବୁଙ୍କ ଅସମାପ୍ତ ଆତ୍ମକଥା ଓ ଇଂରାଜୀ ବକ୍ତୃତାମାଳାର ପ୍ରକାଶ ନିମନ୍ତେ ଆଲୋଚନା କରାଯାଇଥିଲା ।

କମିଟିର ସଦସ୍ୟମାନେ ମଧୁବାବୁଙ୍କର ପୈତୃକ ଗୃହ ସମେତ ବାଲିପୋଖରୀ କୋଠି ବାଳିକା ମଧ୍ୟଇଂରାଜୀ ବିଦ୍ୟାଳୟ ମଧ୍ୟ ପରିଦର୍ଶନ କରିଥିଲେ । ସେଠାରୁ ଫେରି ମଧୁବାବୁ ଶେଷ ଜୀବନ ବିତାଇଥିବା ବର୍ତ୍ତମାନର ଶୈଳବାଳା ମହାବିଦ୍ୟାଳୟ କାର୍ଯ୍ୟାଳୟ ଏବଂ ଗୋରାକବରସ୍ଥିତ ମଧୁବାବୁଙ୍କ ସମାଧିପୀଠ ବୁଲି ଦେଖିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ କମିଟିର ସଦସ୍ୟ ତଥା ପ୍ରମୁଖ ଶାସନ ସଚିବ ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା, ଆବାହକ ତଥା ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ରବୀନ୍ଦ୍ରନାଥ ଦାଶ, କଟକ ଜିଲ୍ଲାପାଳ ଶ୍ରୀ ଆଇଜାକ୍ ବେହେରା, କଟକ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ଅତିରିକ୍ତ ପ୍ରକଳ୍ପ ଅଧିକାରୀ ଶ୍ରୀ ଧ୍ରୁବଚରଣ ସାହୁ, ବିଭାଗୀୟ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ମେଘନାଦ ଟୁଡୁ ପ୍ରମୁଖ ଉପସ୍ଥିତ ଥିଲେ ।

## ଆନ୍ତର୍ଜାତିକ ବାଣିଜ୍ୟ ମେଳା ପାଇଁ ଓଡ଼ିଶାର ପ୍ରସ୍ତୁତି

ଗତ ଅଗଷ୍ଟ ୨୮ ତାରିଖରେ ସଚିବାଳୟ ସମ୍ମିଳନୀ କକ୍ଷରେ ଚଳିତ ବର୍ଷ ନୂଆଦିଲ୍ଲୀସ୍ଥ ପ୍ରଗତି ମଇଦାନରେ ନଭେମ୍ବର ୧୪ରୁ ୨୭ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେବାକୁ ଥିବା ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଓଡ଼ିଶାର ଅଂଶ ଗ୍ରହଣ ସମ୍ପର୍କରେ ଏକ ପ୍ରସ୍ତୁତି ବୈଠକ ଅନୁଷ୍ଠିତ ହୋଇଯାଇଛି । ଏହି ବୈଠକରେ ସୂଚନା ଓ ଲୋକ ସମ୍ପର୍କ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମଲ୍ଲିକ ଅଧ୍ୟକ୍ଷତା କରି ଓଡ଼ିଶା ମଣ୍ଡପକୁ ଅଧିକ ସୁଦୃଶ୍ୟ ତଥା ଆକର୍ଷଣୀୟ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ହସ୍ତଶିଳ୍ପ, ବୟନ ଶିଳ୍ପ ଓ କୁଟୀର ଶିଳ୍ପ ସମେତ ଅନ୍ୟାନ୍ୟ ଶିଳ୍ପଜାତ ସାମଗ୍ରୀ ଆଦି ପ୍ରଦର୍ଶନ ନିମନ୍ତେ ପରାମର୍ଶ ଦେଇଥିଲେ । ଏଥିପାଇଁ ବିଭିନ୍ନ ସରକାରୀ ବିଭାଗ, ବିଭାଗୀୟ ମୁଖ୍ୟ ଦପ୍ତର ଓ ସରକାରୀ ଉଦ୍ୟୋଗ ଏବଂ ବେସରକାରୀ ଶିଳ୍ପୋଦ୍ୟୋଗୀ ତଥା ଅନୁଷ୍ଠାନମାନେ ଏଥିରେ ଅଧିକ ସଂଖ୍ୟାରେ ଯୋଗ ଦେଇ ଓଡ଼ିଶାର ବାଣିଜ୍ୟିକ କ୍ଷେତ୍ରରେ ଅଭିବୃଦ୍ଧି ଘଟାଇବାରେ ସହଯୋଗ କରିବାକୁ କହିଥିଲେ । ଏହି ମେଳା ସମୟରେ ଓଡ଼ିଶା ଦିବସ ପାଳନ ଅବସରରେ ଓଡ଼ିଶାର ପ୍ରାନ୍ତୀୟ ନୃତ୍ୟ ଦଳଗୁଡ଼ିକୁ ନୃତ୍ୟ ପ୍ରଦର୍ଶନ କରିବାକୁ ସୁଯୋଗ ଦେବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ବୈଠକରେ ବିଭିନ୍ନ ସରକାରୀ ଓ ବେସରକାରୀ ସଂସ୍ଥାର ଯୋଗଦାନ ଓ ସେମାନଙ୍କର ସାମଗ୍ରୀ ପ୍ରଦର୍ଶନ, ବିକ୍ରୟ, ଓଡ଼ିଶା ମଣ୍ଡପର ବାର୍ଷିକ ମରାମତି ଓ ରକ୍ଷଣାବେକ୍ଷଣ, ଆଲୋକ ସଜ୍ଜା, ଜଳ ଯୋଗାଣ, ପରିମଳ ବ୍ୟବସ୍ଥା, ମେଳା ସମୟରେ ଓଡ଼ିଶା ଦିବସ ପାଳନ, ପ୍ରଚାର ପୁସ୍ତିକା ପ୍ରକାଶନ ଓ କ୍ୟାଣ୍ଟିନ୍ ବ୍ୟବସ୍ଥା ଆଦି ସମ୍ପର୍କରେ ବିସ୍ତୃତ ଆଲୋଚନା କରାଯାଇଥିଲା ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ବିଭାଗୀୟ ପ୍ରମୁଖ ଶାସନ ସଚିବ ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା, ପର୍ଯ୍ୟଟନ, ସଂସ୍କୃତି ଓ ଯୁବସେବା ବିଭାଗ ଶାସନ ସଚିବ ଶ୍ରୀ ଧୀରେନ୍ଦ୍ର ନାଥ ପାଢ଼ୀ, ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର, ଶିଳ୍ପ ବିଭାଗ ଅତିରିକ୍ତ ଶାସନ ସଚିବ ଶ୍ରୀ ଏନ୍: ଏନ୍: ମିଶ୍ର, ପର୍ଯ୍ୟଟନ ଓ ସଂସ୍କୃତି ନିର୍ଦ୍ଦେଶକ ଶ୍ରୀ ଅଶିତ୍ ତ୍ରିପାଠୀ, ଶିଳ୍ପ ନିର୍ଦ୍ଦେଶକ ଶ୍ରୀ ସି: ଟି: ଏମ୍: ସୁଗୁଣା, ଓରେଡ଼ାର ମୁଖ୍ୟ କାର୍ଯ୍ୟ ନିର୍ବାହୀ ଶ୍ରୀ ବି: ଏନ୍: ଦାସ, ବିଜ୍ଞାନ ଓ କାରିଗରୀ କୌଶଳ ବିଭାଗର ଯୁଗ୍ମ ଶାସନ ସଚିବ ଶ୍ରୀ ଏସ୍: କେ: ରାୟ, ଉତ୍କଳ ପରିଭ୍ରମଣ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ବିଜୟ ଦାସ, ଗ୍ରାମ୍ୟ ଉନ୍ନୟନ ବିଭାଗର ଯୁଗ୍ମ ଶାସନ ସଚିବ ଶ୍ରୀ ରବୀନ୍ଦ୍ର ନାଥ ଦାସ, ଓଡ଼ିଶା ଟେକ୍ସଟାଇଲ୍‌ର ଉପ ନିର୍ଦ୍ଦେଶକ ଶ୍ରୀ ଟି: ପି: ମହାପାତ୍ର, ସୂଚନା ଓ ଲୋକ ସମ୍ପର୍କ ବିଭାଗ ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ମେଘନାଦ ଟୁଡୁ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

OGP—MP—PTS (I&PR) 28—10,000—12-8-1998



ଇଂଜିନିୟର୍ସ ପ୍ରତିଷ୍ଠାନଠାରେ ଅନୁଷ୍ଠିତ ୩୧ତମ ଇଂଜିନିୟର୍ସ ଦିବସ ପାଳନ ଉତ୍ସବକୁ ମାନ୍ୟବର ରାଜ୍ୟପାଳ ଡଃ.ସି.ରଙ୍ଗରାଜନ ଉଦ୍‌ଘାଟନ କରୁଛନ୍ତି । (୧୫.୯.୧୯୯୮)



ସଚିବାଳୟ ସମ୍ମିଳନୀ କକ୍ଷରେ ଆୟୋଜିତ ରାଜ୍ୟ ସୈନିକ ବୋର୍ଡ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଧ୍ୟକ୍ଷତା କରୁଛନ୍ତି । (୧୦.୯.୧୯୯୮)



ହୋଟେଲ ସ୍ୱସ୍ତିଠାରେ ଆୟୋଜିତ ସର୍ବଭାରତୀୟ କ୍ଷୁଦ୍ର ଓ ମଧ୍ୟମ ସମ୍ବାଦପତ୍ର ଜାତୀୟ ପରିଷଦ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପତ୍ରିକା ଉନ୍ମୋଚନ କରୁଛନ୍ତି । (୨୩.୯.୧୯୯୮)



ରାଜଭବନଠାରେ ଆୟୋଜିତ ଏକ ଉତ୍ସବରେ ମାନ୍ୟବର ରାଜ୍ୟପାଳଙ୍କ ସହଧର୍ମିଣୀ ଶ୍ରୀମତୀ ହରପ୍ରିୟା ରଙ୍ଗରାଜନ ଭାରତ ସ୍କାଉଟ୍ ଓ ଗାଇଡ୍‌ର କୃତୀ ଛାତ୍ରଛାତ୍ରୀମାନଙ୍କୁ ରାଜ୍ୟ ପୁରସ୍କାର ପ୍ରଦାନ କରୁଛନ୍ତି । (୧୫.୯.୧୯୯୮)



ରାଜଭବନଠାରେ ଆୟୋଜିତ ରାଜ୍ୟର ବରିଷ୍ଠ ପଦାଧିକାରୀମାନଙ୍କ ବୈଠକରେ ଭାରତର ନିର୍ବାଚନ କମିଶନର ଶ୍ରୀ କେ.ଏମ୍.ଲିଙ୍ଗଡୋ ଭାଷଣ ଦେଉଛନ୍ତି । (୧୧.୯.୯୮)



ଶ୍ରମ କମିଶନର କାର୍ଯ୍ୟାଳୟଠାରେ ଆୟୋଜିତ ଇ.ଏସ.ଆଇ ଡାକ୍ତରମାନଙ୍କ ସମ୍ମିଳନୀକୁ ଶ୍ରମ ଓ ନିଯୁକ୍ତି ମନ୍ତ୍ରୀ ଶ୍ରୀ ଦୁର୍ଗା ଶଙ୍କର ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ଶ୍ରମ ବିଭାଗ ଶାସନ ସଚିବ ଶ୍ରୀ ଅଜିତ କୁମାର ତ୍ରିପାଠୀ, ଡଃ. ସି.ରମଣୀ ଓ କି. ସାମନ୍ତ ଉପସ୍ଥିତ ଅଛନ୍ତି ।




ରବୀନ୍ଦ୍ର ମଣ୍ଡପଠାରେ ଆୟୋଜିତ ଭୁବନେଶ୍ୱର ମହିଳା କ୍ଲବର ରଜତ ଜୟନ୍ତୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏକ ସ୍ମରଣିକା ଉନ୍ମୋଚନ କରୁଛନ୍ତି । (୨୦.୯.୧୯୯୮)




ପୁରୀ ପୌର ସଦନଠାରେ ଅନୁଷ୍ଠିତ ଶତାୟୁ ସନ୍ନ୍ୟାସୀ ଶ୍ରୀପାଦ ଭକ୍ତି ପ୍ରମୋଦ ପୁରୀ ଗୋସ୍ୱାମୀ ମହାରାଜାଙ୍କ ଜନ୍ମଶତବାର୍ଷିକୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ।



କଟକ ଶହୀଦ ଭବନଠାରେ ଆୟୋଜିତ ଦୈନିକ ଓଡ଼ିଆ ସମ୍ବାଦପତ୍ର ମାତୃଭାଷାର ଦଶମ ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । (୭.୯.୧୯୯୮)



କଟକ ଶହୀଦ ଭବନଠାରେ କର୍ମଚାରୀ ସଂଗ୍ରାମ ସମିତି ପକ୍ଷରୁ ଅନୁଷ୍ଠିତ ରାଜ୍ୟସ୍ତରୀୟ ସମ୍ମେଳନରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ତାଙ୍କ ସରକାରୀ ବାସଭବନରେ ମେଡିଆ ଏକାଡେମୀ ଅନୁଷ୍ଠାନକୁ ଉଦ୍‌ଘାଟନ କରୁଛନ୍ତି । (୮.୯.୧୯୯୮)



ସୂଚନା ଭବନଠାରେ ସ୍ୱାଧୀନତା ଦିବସ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କୃତୀ ପୋଲିସ୍ ଅଧିକାରୀମାନଙ୍କୁ ପଦକ ପ୍ରଦାନ କରୁଛନ୍ତି (୧୫-୮-୧୯୯୮)।



ଅଗଷ୍ଟ କ୍ରାନ୍ତି ଦିବସ ଉପଲକ୍ଷେ କାଦୁଆ ଆଶ୍ରମଠାରୁ ସତ୍ୟବାଦୀ ପଞ୍ଚସଖା ସମାଧିପୀଠ ପର୍ଯ୍ୟନ୍ତ ଆୟୋଜିତ ପଦଯାତ୍ରାରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (୯-୮-୧୯୯୮)।



ପି. ଏମ୍. ଜି. ଛକଠାରେ ରାଷ୍ଟ୍ରୀୟ ସଦ୍ଭାବନା ଦିବସ ଉପଲକ୍ଷେ ଅନୁଷ୍ଠିତ ଜୟ ଦୌଡ଼ରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (୨୦-୮-୧୯୯୮)।



ରେଳବାଇ ବୋର୍ଡର ଅଧ୍ୟକ୍ଷ ଶ୍ରୀ ବି.କେ. ଅଗ୍ରୱାଲ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରୁଛନ୍ତି। ମୁଖ୍ୟଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଉପସ୍ଥିତ ଅଛନ୍ତି (୨୭-୮-୧୯୯୮)।



ସ୍ୱାୟତ୍ତ ଶାସନ ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଚନ୍ଦ୍ରଶେଖର ପୁରଠାରେ କଲ୍ୟାଣ ମଣ୍ଡପ ଗୃହ ଉଦ୍‌ଘାଟନ କରୁଛନ୍ତି (୩୧-୮-୧୯୯୮)।



ସ୍ୱାଧୀନତା ଦିବସ ସୁବର୍ଣ୍ଣ ଜୟନ୍ତୀ ସମାପନ ଉତ୍ସବ ଅବସରରେ ଖୋର୍ଦ୍ଧା ଖାଡ଼ିସମଠାରେ ଆୟୋଜିତ ରାଜ୍ୟସ୍ତରୀୟ ପାଇକ ଆଖଡ଼ା ପ୍ରତିଯୋଗିତାକୁ ମନ୍ତ୍ରୀ ଶ୍ରୀ ଭୁପିନ୍ଦର ସିଂହ ମଶାଲ ଜାଳି ଉଦ୍‌ଘାଟନ କରୁଛନ୍ତି (୧୪-୮-୧୯୯୮)।



ସର୍ଦ୍ଦାର ପଟେଲ ହଲର ଉନ୍ନତି ବିଧାନ ନିମନ୍ତେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ନେତ୍ରାନନ୍ଦ ମଲ୍ଲିକ, ମୁଖ୍ୟ ଶାସନ ସଚିବ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର, ଲୋକ ସମ୍ପର୍କ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ସଞ୍ଜୀବ ଚନ୍ଦ୍ର ହୋତା ଓ ଅନ୍ୟାନ୍ୟ ପଦାଧିକାରୀମାନଙ୍କ ସହ ଆଲୋଚନା କରୁଛନ୍ତି (୧୬-୮-୧୯୯୮)।



ରାଜ୍ୟ ସୂଚନା ଭବନଠାରେ 'ଆମ ଓଡ଼ିଶା' ପକ୍ଷରୁ ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କୃତୀ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କୃତ କରୁଛନ୍ତି (୧୮-୮-୧୯୯୮)।



ପୁରୀ ଜଗନ୍ନାଥ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ଅନୁଷ୍ଠିତ ସଂସ୍କୃତ ଦିବସ ସମାରୋହରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି (୧୬-୮-୧୯୯୮)।



ରାଜୀବ ବିକାଶ କେନ୍ଦ୍ର ଓ ରାଜ୍ୟସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ ଅନୁଷ୍ଠିତ ସଦ୍‌ଭାବନା ଦିବସ ସମାରୋହରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ଅନ୍ୟାନ୍ୟ ନେତୃବୃନ୍ଦ (୨୦-୮-୧୯୯୮)।



ସଚିବାଳୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଶାସନ ସଚିବ ଓ ବିଭାଗୀୟ ମୁଖ୍ୟମାନଙ୍କର ଏକ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଭାଷଣ ଦେଉଛନ୍ତି (୧୬-୮-୧୯୯୮)।



ସ୍ୱାଧୀନତା ସୁବର୍ଣ୍ଣଜୟନ୍ତୀ ସମାପନ ଉତ୍ସବ ଅବସରରେ ଆୟୋଜିତ ଏକ ପ୍ରଦର୍ଶନୀ ଫୁଟବଲ୍ ମ୍ୟାଚ୍‌ରେ ବିଜୟୀ ଓଡ଼ିଶା ଏକାଦଶକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କଟକ ଷ୍ଟାଡ଼ିୟମ୍‌ଠାରେ ପୁରସ୍କୃତ କରୁଛନ୍ତି (୧୬-୮-୧୯୯୮)।



ସୂଚନା ଭବନଠାରେ ପ୍ରଖ୍ୟାତ ଓଡ଼ିଶୀ ନୃତ୍ୟ ଶିଳ୍ପୀ ସଂଯୁକ୍ତା ପାଣିଗ୍ରାହୀଙ୍କ ଜୟନ୍ତୀ ଉପଲକ୍ଷେ ଆୟୋଜିତ ଉତ୍ସବକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରଦୀପ ପ୍ରଜ୍ୱଳନ କରି ଉଦ୍‌ଘାଟନ କରୁଛନ୍ତି । ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ ଓ ପ୍ରଖ୍ୟାତ ହିନ୍ଦୀ ଚଳଚ୍ଚିତ୍ର ଅଭିନେତ୍ରୀ ଶ୍ରୀମତୀ ସାଧନା ଖାନିମ୍ ଉପସ୍ଥିତ ଅଛନ୍ତି (୨୪-୮-୧୯୯୮)।



ରାକ୍ଷୀ ପୂର୍ଣ୍ଣିମା ଅବସରରେ ପିଲାମାନେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ହାତରେ ରାକ୍ଷୀ ବାନ୍ଧୁଛନ୍ତି (୭-୮-୧୯୯୮)।



ଏନ୍: ବି: ସି:ର ଅଧ୍ୟକ୍ଷ ଶ୍ରୀ ରବିନ୍ଦର ସିଂହ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରୁଛନ୍ତି (୨୪-୮-୧୯୯୮)।



କେରଳ ହାଇକୋର୍ଟର ପୂର୍ବତନ ଜଷ୍ଟିସ୍ ମାନ୍ୟବର ଶ୍ରୀଯୁକ୍ତ ବି: ଏନ୍: ପଟ୍ଟନାୟକ ଓଡ଼ିଶା ପ୍ରଶାସନିକ ଟ୍ରିବ୍ୟୁନାଲର ଅଧ୍ୟକ୍ଷ ପଦ ଗ୍ରହଣ କରିବା ପରେ ରାଜ୍ୟ ଟ୍ରିବ୍ୟୁନାଲ ବାର୍ ସଙ୍ଘପକ୍ଷରୁ ଆୟୋଜିତ ଏକ ସମ୍ବର୍ଦ୍ଧନା ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି (୬-୮-୧୯୯୮)।



ରାଜ୍ୟ ସଚିବାଳୟଠାରେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ କଳିଙ୍ଗ ଷ୍ଟାଡ଼ିୟମଠାରେ ହେବାକୁଥିବା ବିଭିନ୍ନ କ୍ରୀଡ଼ା ଓ ମନୋରଞ୍ଜନ କାର୍ଯ୍ୟକ୍ରମ ସଂକ୍ରାନ୍ତୀୟ ସମୀକ୍ଷା ବୈଠକରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ପି: କେ: ମିଶ୍ର, ଲୋକ ସମ୍ପର୍କ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ସଂଜୀବ ଚନ୍ଦ୍ର ହୋତା, ନିର୍ଦ୍ଦେଶକ ଶ୍ରୀ ନରେନ୍ଦ୍ର କୁମାର ମିଶ୍ର ଓ ସଂସ୍କୃତି ବିଭାଗ ନିର୍ଦ୍ଦେଶକ ଶ୍ରୀ ପବିତ୍ର ତ୍ରିପାଠୀ (୧୦-୮-୧୯୯୮)।




ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଆଇ: ଆଇ: ଟି: ଖଡ଼ଗପୁରର ଭୁବନେଶ୍ୱର ସମ୍ପ୍ରସାରଣ କେନ୍ଦ୍ର ଉଦ୍‌ଘାଟନ କରୁଛନ୍ତି (୦୩-୮-୧୯୯୮)।



ରାଜ୍ୟ ସାଧନ କେନ୍ଦ୍ର ଦ୍ୱାରା ପ୍ରସ୍ତୁତ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ପୁସ୍ତକ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉନ୍ମୋଚନ କରୁଛନ୍ତି (୮-୮-୧୯୯୮)।



ଭୁବନେଶ୍ୱର ଗୁରୁଦ୍ୱାରାଠାରେ ଅନୁଷ୍ଠିତ ଗୁରୁଗ୍ରନ୍ଥ ସାହେବର ପ୍ରକାଶ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ (୨୩-୮-୧୯୯୮)।



କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ଓ ନିଯୁକ୍ତି ମନ୍ତ୍ରୀ ଶ୍ରୀ ବାବାଗୌଡ଼ା ପାଟିଲ୍ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ଆଲୋଚନା କରୁଛନ୍ତି (୨୧-୮-୧୯୯୮)।



ପ୍ରଥମଥର ଓଡ଼ିଶା ଗସ୍ତରେ ଆସିଥିବା ଭାରତର ମାନ୍ୟବର ଉପରାଷ୍ଟ୍ରପତି ଶ୍ରୀ କୃଷ୍ଣକାନ୍ତଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ଉଚ୍ଚ ନ୍ୟାୟାଳୟର ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀ ଶୈଳେନ୍ଦୁ ନାଥ ଫୁକନ ବିମାନ ଘାଟୀଠାରେ ତାଙ୍କୁ ସ୍ୱାଗତ ଜଣାଇ ପାଛୋଟି ନେଉଛନ୍ତି (୨୨-୮-୧୯୯୮)।



ମାନ୍ୟବର ଉପରାଷ୍ଟ୍ରପତି ଶ୍ରୀ କୃଷ୍ଣକାନ୍ତଙ୍କ ସହଧର୍ମିଣୀ ଶ୍ରୀମତୀ ସୁମନ କୃଷ୍ଣକାନ୍ତ ମହିଳା ଦକ୍ଷତା ସମିତି ଓଡ଼ିଶା ଶାଖାର ଏକ କାର୍ଯ୍ୟକ୍ରମକୁ ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି (୨୨-୮-୧୯୯୮)।

Licence No. C.R.N.P. 5—Licensed to post without Pre-payment



ମହାତ୍ମା ଗାନ୍ଧୀ ମାର୍ଗଠାରେ ଆୟୋଜିତ ରାଜ୍ୟସ୍ତରୀୟ ପରେଡ୍ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଭିବାଦନ ଗ୍ରହଣ କରୁଛନ୍ତି (୧୫–୮–୧୯୯୮)।



ସଚିବାଳୟସ୍ଥ ପ୍ରଦର୍ଶନୀ କକ୍ଷର ଆୟୋଜିତ ଜିଲ୍ଲାପାଳ ସମ୍ମିଳନୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି (୨୮–୮–୧୯୯୮)।

# ଉତ୍କଳ ପ୍ରସଙ୍ଗ



ନଭେମ୍ବର, ୧୯୯୮